Vol. XLVI No. 6 ORISSA ... Licenced to Post without Prepayment
Licence No. C.R.N.P 5—Licenced to Post ...




ପଠାଣି ସାମନ୍ତ ପ୍ଲାନେଟୋରିୟମ୍ ଉଦ୍‌ଘାଟନ



ଭୁବନେଶ୍ୱରରେ ନୂତନ ଜିଲ୍ଲା ସୂଚନା ଓ ଲୋକ ସମ୍ପର୍କ କାର୍ଯ୍ୟାଳୟ ଉଦ୍‌ଘାଟନ

PRINTED AT ORISSA GOVERNMENT PRESS ...



ଯାଜପୁରରେ ପଣ୍ଡିତ ନେହେରୁଙ୍କ ଶ୍ରାଦ୍ଧବାର୍ଷିକୀ ଉପଲକ୍ଷେ ସଙ୍ଗୀତ ସମାରୋହ

# ଉତ୍କଳ ପ୍ରସଙ୍ଗ

ମାଘ ୧୯୧୧ ଶକାବ୍ଦ ୪୬ ଭାଗ ୭ମ ସଂଖ୍ୟା ଫେବୃଆରି ୧୯୯୦



ପ୍ରକାଶନ : ସୂଚନା ଓ ଲୋକ ସମ୍ପର୍କ ବିଭାଗ,
ଓଡ଼ିଶା ସରକାର, ଭୁବନେଶ୍ୱର

ବାର୍ଷିକ ଦେୟ : ଟ ୨୦.୦୦
ପ୍ରତି ଖଣ୍ଡ : ଟ ୨.୦୦

*Type setting by Phototype Setter process*

ମୁଦ୍ରଣ : ଓଡ଼ିଶା ସରକାରୀ ମୁଦ୍ରଣାଳୟ, କଟକ

ଓଡ଼ିଶା ସରକାରଙ୍କ ବିଭିନ୍ନ କାର୍ଯ୍ୟ, ସରକାରୀ ଘୋଷଣା ଓ ଅନ୍ୟାନ୍ୟ ଦରକାରୀ ତଥ୍ୟର ସଂକ୍ଷିପ୍ତ ବିବରଣୀ "ଉତ୍କଳ ପ୍ରସଙ୍ଗ"ରେ ପ୍ରକାଶିତ ହୋଇଥାଏ । ଏହା ବ୍ୟତୀତ ଅନେକ ବିଷୟ ସଂକ୍ଷିପ୍ତ ଆକାରରେ ମଧ୍ୟ ଏହି ପତ୍ରିକାରେ ପ୍ରକାଶ କରାଯାଇଥାଏ । ସେହିଭଳି ବିଷୟକୁ ସମ୍ପୂର୍ଣ୍ଣ ଓ ଅନୁମୋଦିତ ମୂଳ ପାଠ ବୋଲି ଭାବିବା ଉଚିତ ନୁହେଁ ।

"ଉତ୍କଳ ପ୍ରସଙ୍ଗ" ଓଡ଼ିଶା ସରକାରଙ୍କ ସୂଚନା ଓ ଲୋକ ସମ୍ପର୍କ ବିଭାଗ ତରଫରୁ ପ୍ରକାଶ ପାଉଥିଲେ ସୁଦ୍ଧା ଏହି ପତ୍ରିକାରେ ପ୍ରକାଶିତ ମତାମତ ଓ ଚିନ୍ତାଧାରା ସବୁ କ୍ଷେତ୍ରରେ ଓଡ଼ିଶା ସରକାରଙ୍କର ବୋଲି ବୁଝିବାକୁ ହେବ ନାହିଁ ।

# ସୂଚୀ

# ଆମ ଗୁରୁ ପରମ୍ପରା ଓ ପ୍ରଗତି

*ପ୍ରଫେସର୍ ନୁରୁଲ୍ ହାସାନ୍*

ଆମେ ପ୍ରଫେସର୍ ସର୍ବପଲ୍ଲୀ ରାଧାକୃଷ୍ଣନ୍‌ଙ୍କ ଜନ୍ମବାର୍ଷିକୀ ଆଜି ପାଳନ କରୁଛୁ । ସେ ଜଣେ ଅତି ମହାନ୍ ଶିକ୍ଷକ ତଥା ଦାର୍ଶନିକ ଥିଲେ । ସେ ଜାତୀୟ ଐତିହ୍ୟ ଓ ଗୁରୁ ପରମ୍ପରାର ପ୍ରତୀକ ଥିଲେ କହିଲେ ଅତ୍ୟୁକ୍ତି ହେବ ନାହିଁ । ମୁଁ ଅକ୍ସଫୋର୍ଡ଼ ବିଶ୍ୱବିଦ୍ୟାଳୟରେ ତାଙ୍କର ଭାଷଣ ଶୁଣିବାର ସୁଯୋଗ ପାଇଥିଲି ।ସେତେବେଳେ ତଦ୍ଦ୍ୱାରା ଅନୁପ୍ରାଣିତ ହୋଇଥିଲି । ଶିକ୍ଷା କ୍ଷେତ୍ରରେ ସେ ତାଙ୍କ ଜୀବନର ବିଶେଷ ସମୟ ଅତିବାହିତ କରିଛନ୍ତି । ସେଥିଲାଗି ଏଭଳି ଏକ ମହନୀୟ ଗୁରୁଙ୍କ ସ୍ମୃତି ପ୍ରତି ମୁଁ ମୋର ବିନମ୍ର ଶ୍ରଦ୍ଧାଞ୍ଜଳି ଜ୍ଞାପନ କରୁଛି ।

ଏହି ଅବସରରେ ରାଜ୍ୟର ୩୬ ଜଣ କୃତୀ ଶିକ୍ଷକଙ୍କୁ ସମ୍ମାନିତ କରାଯାଇ ସେମାନଙ୍କୁ ପୁରସ୍କାର ପ୍ରଦାନ କରାଯାଉଥିବା ବିଷୟ ଗର୍ବର କଥା ।

ଶିକ୍ଷକମାନଙ୍କୁ ଯଥୋଚିତ ସମ୍ମାନ ଦିଆଗଲେ ସମାଜରେ ପ୍ରଗତି ଦ୍ରୁତତର ହେବ । ଏହା ଅତି ଉତ୍ସାହଜନକ କଥା ଯେ ବିଗତ କେତେବର୍ଷ ଧରି ରାଜ୍ୟ ସରକାର ତଥା କେନ୍ଦ୍ର ସରକାର ଶିକ୍ଷକମାନଙ୍କୁ ସମାଜରେ ନ୍ୟାର୍ଯ୍ୟ ସ୍ଥାନ ଦେବାଲାଗି ସ୍ୱତନ୍ତ୍ର ଉତ୍ସବମାନ ଅନୁଷ୍ଠିତ କରି ଆସୁଛନ୍ତି । ଯେତେବେଳେ ସମଗ୍ର ଦେଶ ଜନସାଧାରଣଙ୍କ ଜୀବନରେ ଏକ ଗୁଣାତ୍ମକ ମାନ ପରିବର୍ତ୍ତନ ପାଇଁ ପ୍ରସ୍ତୁତ ହେଉଛି, ସେତେବେଳେ ସମାଜ ଶିକ୍ଷକ ସମ୍ପ୍ରଦାୟର ଅବଦାନ ନିମନ୍ତେ ସେମାନଙ୍କ ନିକଟରେ ଋଣୀ ।

ଆମ ରାଷ୍ଟ୍ରରେ ଶିକ୍ଷକ ପାରମ୍ପରିକ ଶ୍ରଦ୍ଧା ଓ ସମ୍ମାନର ଅଧିକାରୀ । ତେଣୁ ଜାତିର ଭାଗ୍ୟ ରୂପାୟନ କରିବାରେ ଗୁରୁଙ୍କ ଭୂମିକାର ଗୁରୁତ୍ୱ ଉପରେ ମନ୍ତବ୍ୟ ଦେବା ପ୍ରକୃତ ପକ୍ଷେ ଅନାବଶ୍ୟକ । ତାଙ୍କ ସେବାର ମୂଲ୍ୟ ଅର୍ଥ ଦ୍ୱାରା ନିର୍ଣ୍ଣିତ ହୁଏ ନାହିଁ । ସମୟ ପରିମାଣ ମଧ୍ୟ ନିର୍ଣ୍ଣିତ ହୁଏ ନାହିଁ । ତଥାପି ସମାଜ ଶିକ୍ଷକଙ୍କୁ କେବଳ ସମ୍ମାନ ନଦେଇ ତାଙ୍କର ବୈଷୟିକ କଲ୍ୟାଣ ପ୍ରତି ଧ୍ୟାନ ଦେବା ଉଚିତ । ଆମେ ଯଦି ଠିକ୍ ଭାବରେ ତାଙ୍କର ଯତ୍ନ ନେଉ ସେ ଜାତିର ସର୍ବାଧିକ ସେବା କରି ପାରିବେ ।

ଜଣେ ଶିକ୍ଷକ ଯୁବ ସମ୍ପ୍ରଦାୟର ସାମୂହିକ ବ୍ୟକ୍ତିତ୍ୱ ଗଠନ କରିବା ନିମନ୍ତେ ବିଶେଷ ଗୁରୁତ୍ୱପୂର୍ଣ୍ଣ ଭୂମିକା ଗ୍ରହଣ କରିଥାନ୍ତି । ଶିକ୍ଷାର୍ଥୀମାନଙ୍କୁ ସୁମଣିଷ କରିବା ପାଇଁ ସେମାନଙ୍କୁ ମୂଲ୍ୟବୋଧ ଶିକ୍ଷା ଦେବା ତଥା ସେମାନଙ୍କ ଚରିତ୍ର ଗଠନ କରିବା ଦିଗରେ ତାଙ୍କର ଗୁରୁତ୍ୱପୂର୍ଣ୍ଣ ଅବଦାନ ରହିଛି । ଅନୁକମ୍ପା ଏବଂ ସହନାଦି ମୂଲ୍ୟବୋଧ କିଶୋର ଶିକ୍ଷାର୍ଥୀ ମନରେ ଆଧାରିତ ଓ ଉନ୍ମୀଳିତ କରିବା ଓ ସତୀର୍ଥ ନାଗରିକମାନଙ୍କ ଆବଶ୍ୟକତା ପ୍ରତି ସମ୍ମାନ ସ୍ଥାପନ କରିବା ପାଇଁ ସେମାନଙ୍କୁ ଉତ୍ସାହିତ କରିବା ଗୁରୁଙ୍କର ବିଶେଷ ଦାୟିତ୍ୱ । ଶିକ୍ଷକ ହିଁ କିଶୋର ମନରେ ଭାରତୀୟତାର ଗୌରବବୋଧ ସୃଷ୍ଟି କରିପାରନ୍ତି । ରାଷ୍ଟ୍ରର ସଂହତି ଓ ସ୍ୱାଧୀନତା ବଜାୟ ରଖିବା ପାଇଁ ସେମାନଙ୍କ ମନରେ ଦୃଢ଼ ସଂକଳ୍ପ ଭରି ଦିଅନ୍ତି । ନିଜର ପ୍ରୟାସ ଦ୍ୱାରା ଗଣତନ୍ତ୍ର ସମାଜବାଦ୍ ଓ ସର୍ବଧର୍ମ ସମନ୍ୱୟର ଧାରଣାକୁ ପ୍ରୋତ୍ସାହିତ କରନ୍ତି । ଜଟିଳତା, ସଂକୀର୍ଣ୍ଣ ମନୋଭାବ ଓ କୁସଂସ୍କାର ପରିହାର କଲେ ଦେଶବାସୀ ଅଗ୍ରଗତି କରି ପାରିବେ । ଏ ଦିଗରେ ମଧ୍ୟ ଶିକ୍ଷକମାନଙ୍କର ମହାର୍ଘ ଅବଦାନ ରହିଛି ।

ଆମ ରାଷ୍ଟ୍ର ଦ୍ରୁତ ରୂପାନ୍ତର ପଥରେ ପାଦ ଦେଇଛି । ତେଣୁ ଶିକ୍ଷକ ଶିକ୍ଷାର୍ଥୀମାନଙ୍କ ପ୍ରତି ପ୍ରଶସ୍ତ ମନୋଭାବ ରଖିବା ଆବଶ୍ୟକ । କେବଳ ଅତୀତର ପରମ୍ପରା ବଜାୟ ରଖିବା ଆମ ପକ୍ଷେ ଯଥେଷ୍ଟ ନୁହେଁ । କେବଳ ଋଷିମାନଙ୍କର ପ୍ରଜ୍ଞାନୁସରଣ ଯଥେଷ୍ଟ ନୁହେଁ । ଏ ସବୁ ଆମ ଆଧ୍ୟାତ୍ମିକତାର ପୁଷ୍ଟି ପାଇଁ ଅତ୍ୟାବଶ୍ୟକ ହୋଇପାରେ, ମାତ୍ର ଶିକ୍ଷା ପଦ୍ଧତିର ଲକ୍ଷ୍ୟ ହାସଲ ଦିଗରେ କେବଳ ଏତିକିରେ ଆମେ ସୀମାବଦ୍ଧ ହୋଇ ପାରିବା ନାହିଁ । ବିଜ୍ଞାନ ଏବଂ ବୈଷୟିକ ବିଦ୍ୟାର ଅତ୍ୟାଧୁନିକ ଅଭିବୃଦ୍ଧି ସମ୍ପର୍କରେ ଆମେ ସମୀକ୍ଷା କରିବା ବାଞ୍ଛନୀୟ । ମୁଖ୍ୟତଃ ଜଣେ ଶିକ୍ଷକ ବୈଜ୍ଞାନିକ ଦୃଷ୍ଟିସମ୍ପନ୍ନ ହେବା ଉଚିତ । ସେ ବିଜ୍ଞାନ ଓ ବୈଷୟିକ ବିଦ୍ୟାର ଦ୍ରୁତ ଅଗ୍ରଗତି ସମ୍ପର୍କରେ ଯୁବ ସମ୍ପ୍ରଦାୟକୁ ଅବହିତ କରିବା ଉଚିତ । ଶିକ୍ଷା ପଦ୍ଧତି ଏପରି ସଙ୍ଗଠିତ ହେବା ଉଚିତ ଯେ ମହାନ୍ ଆଧ୍ୟାତ୍ମିକ ପରମ୍ପରାରେ ଏହାର ଚେର ଦୃଢ଼ ଭାବେ ରୋପଣ ହୋଇଥିଲେ ମଧ୍ୟ ବିଜ୍ଞାନ, ବୈଷୟିକ ବିଦ୍ୟା ଓ ସମାଜରେ ଘଟୁଥିବା ପରିବର୍ତ୍ତନ ସବୁକୁ ଏହା ଏକାନ୍ୱିତ କରି ପାରିବ ।

ରାଜଭବନ,
ଭୁବନେଶ୍ୱର ।

(ଗୁରୁଦିବସରେ ପ୍ରଦତ୍ତ ଭାଷଣରୁ)



# ଓଡ଼ିଶା କୃଷି ବୈଷୟିକ ବିଶ୍ୱବିଦ୍ୟାଳୟ

**ଡଃ ସୀତାନାଥ ଦାସ**
ଡିନ୍, ଗବେଷଣା ବିଭାଗ
**ଡଃ ଚିନ୍ତାମଣି ଦାସ**
ପ୍ରାଧ୍ୟାପକ, ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ

ଓଡ଼ିଶାରେ କୃଷିର ଆଧୁନିକୀକରଣ ତଥା କ୍ଷୁଦ୍ର ଓ ନାମମାତ୍ର କୃଷକମାନଙ୍କର ସମୂହ ଉନ୍ନତି ପାଇଁ ୧୯୬୨ ମସିହାରେ ତତ୍କାଳୀନ ଆମେରିକାର ରାଷ୍ଟ୍ରଦୂତ ପ୍ରଫେସର୍ ଗଲ୍‌ବ୍ରେଥ୍‌ଙ୍କ ଦ୍ୱାରା ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର ଭିତ୍ତି ପ୍ରସ୍ତର ସ୍ଥାପିତ ହୋଇଥିଲା । ଅଧୁନା ଏହି ଗ୍ରାମ୍ୟାଭିମୁଖୀ ବିଶ୍ୱବିଦ୍ୟାଳୟରେ ଅଧିକାଂଶ କୃଷି ସମ୍ବନ୍ଧୀୟ ମହାବିଦ୍ୟାଳୟର ପ୍ରତିଷ୍ଠା ତଥା ଗବେଷଣା ଓ ସମ୍ପ୍ରସାରଣ ନିର୍ଦ୍ଦେଶାଳୟ ନାମରେ ଦୁଇଗୋଟି ବିଭାଗର ସମନ୍ୱୟରେ ଏକ ପୂର୍ଣ୍ଣାଙ୍ଗ କୃଷି ବିଶ୍ୱବିଦ୍ୟାଳୟ ଭାବରେ ଦେଶ ବିଦେଶରେ ସୁନାମ ଅର୍ଜନ କରିଛି ।

ପରିବେଶର ସୁରକ୍ଷାକୁ ଆଖି ଆଗରେ ରଖି ଓ ସ୍ୱଳ୍ପ ବ୍ୟୟଯୁକ୍ତ ବୈଷୟିକ କୌଶଳ ଅବଲମ୍ବନ ପୂର୍ବକ ଶିକ୍ଷା, ଗବେଷଣା ଓ ସମ୍ପ୍ରସାରଣ କାର୍ଯ୍ୟକ୍ରମ ମାଧ୍ୟମରେ ସବୁଜ ବିପ୍ଳବ, ଗୋ-ସମ୍ପଦର ଉନ୍ନତି, କୃଷି ଉପକରଣର ଆଧୁନିକୀକରଣ ତଥା ଗୃହବିଜ୍ଞାନ, ମତ୍ସ୍ୟ ଓ ବନ ସମ୍ପଦର ଉନ୍ନତି କରିବା ଏହି ଅନୁଷ୍ଠାନର ପ୍ରଧାନ ଲକ୍ଷ୍ୟ ଭାବରେ ଗ୍ରହଣ କରାଯାଇଅଛି ।

ମୃତ୍ତିକା ଓ ଜଳବାୟୁର ଆଞ୍ଚଳିକ ତାରତମ୍ୟ ଓ କୃଷକର ଆବଶ୍ୟକତାକୁ ଲକ୍ଷ୍ୟ ରଖି, ଗବେଷଣାକୁ ଅଧିକ ଉପଯୋଗୀ କରିବା ଉଦ୍ଦେଶ୍ୟରେ ଓଡ଼ିଶାକୁ ୧୦ଗୋଟି ଆଞ୍ଚଳିକ ଭାଗରେ (Agroclimatic Zone) ବିଭକ୍ତ କରାଯାଇ, ୧୯୭୮--୧୯୮୩ ମସିହା ବେଳକୁ ପ୍ରତ୍ୟେକ ଭାଗରେ ଗୋଟିଏ ଆଞ୍ଚଳିକ ଗବେଷଣା କେନ୍ଦ୍ର (Regional Research Station) ସ୍ଥାପନ କରାଗଲା । ପୃଥିବୀ ବ୍ୟାଙ୍କ୍ (World Bank) ସହାୟତାରେ ୧୯୭୯ ମସିହାରେ ଓଡ଼ିଶା କୃଷି ଉନ୍ନୟନ ଯୋଜନା (OADP) ଏବଂ ୧୯୮୩ ମସିହାଠାରୁ ଭାରତୀୟ କୃଷି ଗବେଷଣା ପରିଷଦ (ICAR) ଆର୍ଥିକ ସହାୟତାରେ ଜାତୀୟ କୃଷି ଗବେଷଣା ଯୋଜନା କାର୍ଯ୍ୟକାରୀ ହେବା ଫଳରେ ବିଶ୍ୱବିଦ୍ୟାଳୟର ଗବେଷଣା କାର୍ଯ୍ୟକ୍ରମ ଏକ ନୂତନ ପରିସର ଭିତରକୁ ଆସି ପରିଲା । ଚିପିଲିମା, କେନ୍ଦୁଝର, କୋରାପୁଟ ଜିଲ୍ଲାର ସେମିଳିଗୁଡ଼ା ଓ ଭୁବନେଶ୍ୱରରେ ଓଡ଼ିଶା କୃଷି ଉନ୍ନୟନ ଗବେଷଣା କାର୍ଯ୍ୟକ୍ରମ କାର୍ଯ୍ୟକାରୀ ହେଉଛି । ସେହିପରି ବାଲେଶ୍ୱର ଜିଲ୍ଲାର ରାଣୀତାଲ ଓ ମୋତୋ, ଢେଙ୍କାନାଳ ଜିଲ୍ଲାର ମହିଷାପାଟ୍, କଳାହାଣ୍ଡି ଜିଲ୍ଲାର ଭବାନୀପାଟଣା, ଫୁଲବାଣୀ ଜିଲ୍ଲାର ଜି. ଉଦୟଗିରି ଏବଂ କୋରାପୁଟ ଜିଲ୍ଲାର ଉମରକୋଟ୍ ଓ ନବରଙ୍ଗପୁରରେ ଥିବା ଗବେଷଣା କେନ୍ଦ୍ରଗୁଡ଼ିକରେ ଜାତୀୟ କୃଷି ଗବେଷଣା ଯୋଜନା (NARP) କାର୍ଯ୍ୟକାରୀ ହେଉଛି ।

ବିଭିନ୍ନ ଆଞ୍ଚଳିକ ଓ କେନ୍ଦ୍ରୀୟ ଗବେଷଣାର ଫଳାଫଳକୁ ଅଧିକ ପ୍ରୟୋଗାତ୍ମକ ଓ ଉପଯୋଗୀ କରିବା ଉଦ୍ଦେଶ୍ୟରେ ରାଜ୍ୟ କୃଷି ବିଭାଗର ସକ୍ରିୟ ସହଯୋଗରେ ପ୍ରତ୍ୟେକ ଜିଲ୍ଲାରେ ଥିବା ଗବେଷଣା କେନ୍ଦ୍ର ତଥା କୃଷକ କ୍ଷେତରେ ଅଧିକ ପରୀକ୍ଷା ନିରୀକ୍ଷା କରାଯାଇ ଫଳାଫଳକୁ କୃଷକମାନଙ୍କ ନିକଟରେ ପହଞ୍ଚାଇ ଦିଆଯାଉଛି । ଧାନ ବ୍ୟତୀତ ଆଞ୍ଚଳିକ ଚାହିଦା ଓ ଜଳବାୟୁକୁ ଆଖି ଆଗରେ ରଖି ତୈଳବୀଜ ଜାତୀୟ ଫସଲ, ଡାଲି ଜାତୀୟ ଫସଲ ଓ ଅନ୍ୟାନ୍ୟ ଅର୍ଥକାରୀ ଫସଲର ଗବେଷଣାକୁ ଅଧିକ ତ୍ୱରାନ୍ୱିତ କରାଯାଉଛି । ବିଭିନ୍ନ ଫସଲ ତଥା ପଶୁ ଓ କୁକୁଡ଼ା ପାଳନ ଉପରେ ଗବେଷଣା କରିବା ଲାଗି ଭାରତୀୟ କୃଷି ଗବେଷଣା ପରିଷଦ ଆନୁକୂଲ୍ୟରେ ବିଶ୍ୱ ବିଦ୍ୟାଳୟ ଅଧୀନରେ ୩୯ଗୋଟି ସର୍ବଭାରତୀୟ ସମନ୍ୱୟ ଗବେଷଣା ଯୋଜନା (AICRP) କାର୍ଯ୍ୟକାରୀ ହେଉଛି ।

ବିଗତ ୫ ବର୍ଷ ମଧ୍ୟରେ ଗବେଷଣାର ଫଳାଫଳକୁ କୃଷକମାନଙ୍କ ନିକଟରେ ପହଞ୍ଚାଇ ପାରିଛି ଏବଂ ତାହାଦ୍ୱାରା ଓଡ଼ିଶାର କୃଷି କ୍ଷେତ୍ରରେ ଏକ ବିପ୍ଳବ ଆଣିବାରେ ବିଶ୍ୱବିଦ୍ୟାଳୟର ଉଦ୍ଦେଶ୍ୟ ସଫଳ ହୋଇ ପାରିଛି । ଏହି ସାଫଲ୍ୟ ଫଳରେ ଭାରତୀୟ କୃଷି ଗବେଷଣା ପରିଷଦ (ICAR) ଜାତୀୟ କୃଷି ଗବେଷଣା ଯୋଜନା (୨ୟ ସ୍ତର କାର୍ଯ୍ୟକ୍ରମ)କୁ ଅଧିକ ପାଞ୍ଚବର୍ଷ ଲାଗି କାର୍ଯ୍ୟକାରୀ କରିବା ପାଇଁ ମଇ ମାସ ୧୯୮୯ରେ ଘୋଷଣା କରି ସାରିଛନ୍ତି । ଏହାର ଅନୁଦାନରେ ଏବେ ୭ଗୋଟି ଗବେଷଣା କେନ୍ଦ୍ରର ଆଭିମୁଖ୍ୟକୁ ଆହୁରି ଅଧିକ ଉନ୍ନତ କରିବା ସଙ୍ଗେ ସଙ୍ଗେ ସୁନ୍ଦରଗଡ଼ ଜିଲ୍ଲାର

ଭିତ୍ତିରେ ଭୂମିକରଣ, ମୃତ୍ତିକା ଓ ଜଳ ସଂରକ୍ଷଣ ଗବେଷଣା (Soil & Water Conservation Research) ଲାଗି ଏବଂ ଆମ୍ବୁ ଫସଲର ଗବେଷଣା ଲାଗି ପୁରୀ ଜିଲ୍ଲାର ନୟାଗଡରେ ଗବେଷଣା କେନ୍ଦ୍ର ପ୍ରତିଷ୍ଠା କରାଯାଇଛି । ଏହା ଫଳରେ ହଳଦିଆ ଓ ଲାଲ ମୃତ୍ତିକା ବିଶିଷ୍ଟ ସୁନ୍ଦରଗଡ ଜିଲ୍ଲାରେ ବନୀକରଣ, ମୃତ୍ତିକା କ୍ଷୟ ଓ ଜଳ ଉପଯୋଗିତା ବିଷୟରେ ଅଧିକ ଫଳପ୍ରଦ ଗବେଷଣା ହେବା ସଙ୍ଗେ ସଙ୍ଗେ ନୟାଗଡରେ ଆମ୍ବୁ ଫସଲର ଗବେଷଣା ଫଳରେ ସାରା ରାଜ୍ୟର ଆମ୍ବୁ ଚାଷୀମାନେ ଯେ ଏହାର ଫଳାଫଳକୁ ଉପଯୋଗ କରି ଅଧିକ ଲାଭବାନ ହେବେ ଏଥିରେ ସନ୍ଦେହ ନାହିଁ ।

ଅନ୍ତର୍ଜାତିକ ଧାନ ଗବେଷଣା ପ୍ରତିଷ୍ଠାନ (IRRI) ଏବଂ ଅନ୍ତର୍ଜାତିକ କୃଷି ଉନ୍ନୟନ ପାଣ୍ଠି (IFDA)ର ଅନୁକୂଲ୍ୟରେ କଳାହାଣ୍ଡି ଜିଲ୍ଲାର ଶୁଷ୍କ ମୃତ୍ତିକା ଓ ଲୋହିତ ମୃତ୍ତିକା ବିଶିଷ୍ଟ ଡିପ ଜମିର ଧାନ ଫସଲ ଉପରେ ଏବଂ ଅନ୍ୟଟି କଟକ ଜିଲ୍ଲାର କେନ୍ଦ୍ରାପଡା ଅଞ୍ଚଳର ଜଳସେଚିତ ଗଭୀର ଜମିର ଧାନ ଫସଲର ଉନ୍ନତି ବିଧାନ ଲାଗି କୃଷକ କ୍ଷେତରେ ଗବେଷଣା ଓ ପରୀକ୍ଷା ନିରୀକ୍ଷା ଏହି ବର୍ଷଠାରୁ ଆରମ୍ଭ କରାଯାଇଅଛି । ଫୁଲବାଣୀ ଜିଲ୍ଲାରେ ଏଭଳି କେତେକ ଫଳପ୍ରଦ ଗବେଷଣା କରାଯାଇଛି ଓ ଫଳାଫଳକୁ ଚାଷୀମାନଙ୍କ ନିକଟରେ ପହଞ୍ଚାଇ ଦିଆଯାଉଛି ।

କୃଷି ଗବେଷଣା ଓ ସମ୍ପ୍ରସାରଣର ସମନ୍ୱୟ ଫଳରେ ଗବେଷଣାର ଫଳାଫଳକୁ କୃଷକ ନିକଟରେ ପହଞ୍ଚାଇ ଦେବା ସୁଗମ ହୋଇଛି । ଗବେଷଣାଗାରରୁ କୃଷିକ୍ଷେତ୍ର କାର୍ଯ୍ୟକ୍ରମ, କୃଷକ ତାଲିମ ଶିବିର, କ୍ଷେତ୍ର ପରିଦର୍ଶନ କାର୍ଯ୍ୟକ୍ରମ ମାଧ୍ୟମରେ ଏହା ସମ୍ଭବ ହୋଇ ପାରିଛି । କାନାଡା ମେମୋରିଆଲ୍ ବିଶ୍ୱବିଦ୍ୟାଳୟ ସହଯୋଗରେ କୃଷକ ତାଲିମ ପାଇଁ ଏକ ଭିଡିଓ ପ୍ରକଳ୍ପ ଗଠିତ ହୋଇଛି । ଦୂରଶିକ୍ଷା କାର୍ଯ୍ୟକ୍ରମ ଆରମ୍ଭ ହେବା ଫଳରେ ଲବ୍ଧ ଆଧୁନିକ କୃଷି ସମ୍ବନ୍ଧୀୟ ଜ୍ଞାନ ପତ୍ରଶିକ୍ଷା ମାଧ୍ୟମରେ କୃଷକମାନଙ୍କ ପାଖରେ ପହଞ୍ଚାଇ ଦିଆଯାଇ ପାରୁଛି ।

ଓଡିଶାବାସୀଙ୍କ ଆଶା ଓ ଆକାଂକ୍ଷାକୁ ୨୨ ବର୍ଷ ତଳେ ଗଢି ଉଠିଥିବା ଏହି ବିଶ୍ୱବିଦ୍ୟାଳୟ ସଫଳ କରିବାରେ ଯେ କୃତକାର୍ଯ୍ୟ ହୋଇଛି ଏବଂ ଅଗଣିତ ଚାଷୀ ଭାଇମାନଙ୍କ ପାଇଁ ଆଗାମୀ ଦିନରେ ଆହୁରି ଅନେକ ସଫଳ ବାର୍ତ୍ତା ଆଣିଦେବ, ଏଥିରେ ସନ୍ଦେହ ନାହିଁ । ଭୁବନ, ଲଲାଟ, ଶ୍ରାବଣୀ ଭଳି ଅଧିକ ଅମଳକ୍ଷମ ଓ ରୋଗପୋକ ନିରୋଧ ଶକ୍ତି ଥିବା ନୂତନ କିସମର ଧାନ ଉଦ୍ଭାବନ କରାଯାଇଛି । ସେହିପରି ବାଦାମୀ କିସମର ଧାନ ଡିପ ଜମି ଲାଗି ଉପଯୁକ୍ତ ।

ଶୁଷ୍କ ଅଞ୍ଚଳ ଲାଗି ସୁଭଦ୍ରା, ଡି.ଆର୍. ୮୩–୧ ଓ ଡି.ଆର୍. ୮୩–୨ କିସମର ଧାନ ଉପଯୁକ୍ତ ବୋଲି ଚିହ୍ନଟ କରାଯାଇଛି । ଏଗୁଡିକ ମରୁଡି ପରିସ୍ଥିତିକୁ ପ୍ରତିରୋଧ କରିବା ପ୍ରମାଣିତ ହୋଇ ସାରିଛି । କ୍ରମାଗତ ମରୁଡି ଅଞ୍ଚଳ ଲାଗି ଅର୍–୬୦ ହରଡ ସହ ସୁଭଦ୍ରା ଧାନ ଅନ୍ତଃ ଫସଲ ଭାବେ ନେଲେ ଲାଭଜନକ ।

ବିଲାତି ବାଇଗଣର ଝାଉଁଳା ରୋଗ ଦୀର୍ଘ ଦିନ ଧରି ଏକ ସମସ୍ୟା ହୋଇ ରହି ଆସିଥିଲା । ଗବେଷଣା ଦ୍ୱାରା ବି.ଟି–୧, ବି.ଟି–୨ ଓ ଏଲ୍.ଇ–୭୯ ବିଲାତି ବାଇଗଣ କିସମଗୁଡିକରେ ଏହି ରୋଗକୁ ପ୍ରତିରୋଧ କରିବା ଶକ୍ତି ଥିବା ପରୀକ୍ଷା ଦ୍ୱାରା ଜଣାପଡିଛି । ଫଳରେ ଏହାର ଚାହିଦା ବଢି ଚାଲିଛି । ରୋଗ ପ୍ରତିରୋଧ ସହ ଏହା ହେକ୍ଟର୍ ପ୍ରତି ୩୦୦ କୁଇଣ୍ଟାଲ୍ ପର୍ଯ୍ୟନ୍ତ ଅମଳ ହୋଇ ପାରୁଛି ।

ଏହା ବ୍ୟତୀତ ବିଭିନ୍ନ ଅଞ୍ଚଳ ଓ ଫସଲ ପାଇଁ ଉପଯୁକ୍ତ ସାର ପ୍ରୟୋଗ, ଜୈବସାରର ବ୍ୟବହାର, କାଗଜକଳ ମଇଳା ଓ ଚୂନ ପ୍ରୟୋଗ ଦ୍ୱାରା ମୃତ୍ତିକାକୁ ଅଧିକ ଉପାଦେୟ କରିବା, କଳାହାଣ୍ଡି ଜିଲ୍ଲାର ଶୁଷ୍କ ଢାଲୁ ଓ ଅସମତଳ ଅଞ୍ଚଳ ଲାଗି ବିଶ୍ୱବିଦ୍ୟାଳୟ ଦ୍ୱାରା ଉଦ୍ଭାବିତ ସୁଭଦ୍ରା, ରୁଦ୍ର ଓ ଶଙ୍କର ପ୍ରଭୃତି କିସମ ସର୍ବୋତ୍କୃଷ୍ଟ ବୋଲି ପ୍ରମାଣ ହୋଇ ସାରିଛି । ଏହି ଜିଲ୍ଲାରେ ଥିବା କୃଷ୍ଣ କାର୍ପାସ ମୃତ୍ତିକା ପାଇଁ ଧାନ ସହ ବୁଟ ଛଟା ଫସଲ (Pyra crop) ଭାବରେ ନେଲେ ଅଧିକ ଲାଭଜନକ । ବି.ଏ.ୟୁ–୧, ଏସ୍.ଏସ୍.ବି.–୧ ଓ ଆର୍.ପି.ଏମ୍.–୧–୧ କିସମର ଗୁଲୁଜି ଫସଲ; ଅର୍.ଆଇ.ସି–୨୮ କିସମ ପେଣା ଓ ମଡିର୍ନ କିସମର ସୂର୍ଯ୍ୟମୁଖୀ ଏହି ଅଞ୍ଚଳ ଲାଗି ଉତ୍କୃଷ୍ଟ ବୋଲି ଗବେଷଣାରୁ ଜଣାପଡିଛି ।

ବାଲେଶ୍ୱର ଜିଲ୍ଲାର ରାଣୀତାଳ ଓ ମହେଶ ଗବେଷଣା କେନ୍ଦ୍ରର ଗବେଷଣା ଫଳାଫଳରୁ ଜଣାପଡିଛି ଯେ ସି.ଆର୍.–୨୯୨–୬୨୫–୨, ଓ.ଆର୍.–୬୬୧–୬ ଓ ନ୍.ସି–୫୯୩ କିସମର ଧାନ ଉପକୂଳ ଅଞ୍ଚଳ, ସନ୍ତସନ୍ତିଆ ନିମ୍ନଭୂମି (Water logged condition) ପାଇଁ ଉପଯୁକ୍ତ । ସହଳ ଅମଳକ୍ଷମ ହୀରା, ଲାଟ୍ଣାଲୀ, ସି.ଆର୍.ଏମ୍.–୩୦, ଓ.ସି.ଆର୍.–୬୪୪ ଧାନ ବନ୍ୟାପ୍ଲାବିତ ନିମ୍ନ ବୁଡି ଅଞ୍ଚଳ ପାଇଁ ଉପଯୋଗୀ ବୋଲି ଗବେଷଣାରୁ ଜଣାପଡିଛି । ଉପକୂଳ ଅଞ୍ଚଳରେ ଲୁଣି, ଅଣଜଳସେଚିତ ଜମି ଲାଗି ଉଚ୍ଛୁର କିସମର ଧାନ–ସୂର୍ଯ୍ୟମୁଖୀ ଫସଲ ପର୍ଯ୍ୟାୟ ଅବଲମ୍ବନ କଲେ ଅଧିକ ଫଳପ୍ରଦ ହେବ ଦେଖାଦେଇଛି । ବିଗତ ଦୁଇ ବର୍ଷ ମଧ୍ୟରେ ଫସଲ ଉନ୍ନୟନ ଲାଗି ପ୍ରଜନନ ଦ୍ୱାରା ମଟିଆଲି ଜମି ଲାଗି ଅଧିକରେ କୃଷକମାନଙ୍କ ଉନ୍ନତି କଳ୍ପେ ଏହି ବର୍ଷଠାରୁ ଏହି ଅଞ୍ଚଳର ଚାଷୋନୁପଯୁକ୍ତ ମୃତ୍ତିକାର ପରିଚାଳନା ତଥା ଉନ୍ନତିବିଧାନ (Waterland management) ଲାଗି ଗବେଷଣା କାର୍ଯ୍ୟ ଆରମ୍ଭ କରାଯାଇଛି ।

ଓଡିଶାର କୃଷକମାନଙ୍କୁ ବିଭିନ୍ନ ଫସଲର ଉନ୍ନତି ଓ ଅଧିକ ଅମଳକ୍ଷମ ନିରୋଗୀ ବିହନ ଯୋଗାଇଦେବା ଉଦ୍ଦେଶ୍ୟରେ ଭାରତୀୟ କୃଷି ଗବେଷଣା ପ୍ରତିଷ୍ଠାନ ଆର୍ଥିକ ସାହାଯ୍ୟରେ ୧୯୭୯ ମସିହାଠାରୁ ବିହନ ଉତ୍ପାଦନ ଯୋଜନା ହାତକୁ ନିଆଯାଇଛି । ଓଡିଶା କୃଷି ବିଭାଗ ଓ ରାଜ୍ୟ ବିହନ ନିଗମ ସହଯୋଗରେ ଏହା କାର୍ଯ୍ୟକାରୀ ହେଉଛି । ଷ୍ଟେଟ୍ ବ୍ୟାଙ୍କ୍‌ର ଆର୍ଥିକ ସାହାଯ୍ୟରେ ୧୯୮୫ ମସିହାଠାରୁ ଅନୁମୋଦିତ ଓ ପିଣ୍ଡ ବିହନ (Certified and Foundation) ଉତ୍ପାଦନ କରାଯାଇ କୃଷକମାନଙ୍କୁ ଯୋଗାଇ ଦିଆଯାଉଛି । ନିର୍ଦ୍ଦିଷ୍ଟ ଫସଲ ଓ କିସମର ବିହନ ଉତ୍ପାଦନ ଲାଗି ଯୋଜନା ନିର୍ଦ୍ଧାରିତ ହୋଇଛି ।

ଓଡିଶାର ଅଧିକାଂଶ ଚାଷଜମି କେବଳ ବର୍ଷା ଉପରେ ନିର୍ଭର କରୁଥିବାରୁ, ବିଶ୍ୱବିଦ୍ୟାଳୟ ଗବେଷଣାକୁ ଅନୁରୂପ ଭାବରେ କାର୍ଯ୍ୟକାରୀ କରିବା ଲାଗି ଯୋଜନା କରାଯାଇଛି । ବିଭିନ୍ନ ଅଞ୍ଚଳ ପାଇଁ ଉପଯୋଗୀ ହେଲା ଭଳି ବିହନ ବ୍ୟବହାର, ଫସଲ ପର୍ଯ୍ୟାୟ ଏବଂ ଫସଲ ପରିଚାଳନା ପ୍ରଣାଳୀ ଅବଲମ୍ବନ କରି କିପରି ଅଧିକ ଅମଳ ଦ୍ୱାରା କୃଷକ ଲାଭବାନ ହୋଇପାରିବେ ସେଥିଲାଗି ବିଶ୍ୱବିଦ୍ୟାଳୟର ଗବେଷଣା ଓ ସମ୍ପ୍ରସାରଣ ବିଭାଗର ଅବଦାନ ପ୍ରଶଂସନୀୟ ।

ହରଡ ସହିତ ଚିନ୍ ଅନ୍ତଃଫସଲ କେଉଁଝରର ଅଞ୍ଚଳ ପାଇଁ ସର୍ବଶ୍ରେଷ୍ଠ ବୋଲି ପ୍ରମାଣିତ ହୋଇଛି । ହେକ୍ଟର୍ ପ୍ରତି ୧୩.୬୯

ଟଙ୍କା ଲାଭ ମିଳିପାରୁଛି । ସେହିଭଳି ସୂର୍ଯ୍ୟକାନ୍ତି ଓ କାର୍ତ୍ତିକ ଭଳି ଦେଶୀ ଧାନରେ ଉପଯୁକ୍ତ ସାର ପ୍ରୟୋଗ ଓ ଚାଷ ପ୍ରଣାଳୀ ଅବଲମ୍ବନ କଲେ କେତେକ ଅଧିକ ଅମଳକ୍ଷମ ଧାନ କିସମଠାରୁ ମଧ୍ୟ ଅଧିକ ଅମଳ ଦେଇ ପାରୁଛି । ଏହି ଧାନ ଉତ୍ତର କେନ୍ଦ୍ରୀୟ ମାଳ ଅଞ୍ଚଳର ଜଳବାୟୁ ଓ ମୃତ୍ତିକା ପାଇଁ ଉପଯୁକ୍ତ । ସେହିଭଳି ଡି.ଆର୍‌–୩ କିସମ ସୋୟାବିନ୍ ଏହି ଅଞ୍ଚଳର ଅଣଜଳସେଚିତ ଡିପ ଜମି ପାଇଁ ଉପଯୁକ୍ତ ବୋଲି ଗବେଷଣାର ଫଳାଫଳରୁ ଜଣାପଡିଛି । ଉମରକୋଟ ଭଳି ପୂର୍ବଘାଟ ଉଚ୍ଚ ମାଳଭୂମି ଅଞ୍ଚଳ ପାଇଁ ମକ୍କା ଓ ସୋୟାବିନ୍ ଅନ୍ତଃଫସଲ ସବୁଠାରୁ ଲାଭଜନକ ଏବଂ ଏଥିରୁ ହେକ୍ଟର୍ ପ୍ରତି ୧୦,୪୭୯ ଟଙ୍କା ଲାଭ ମିଳି ପାରୁଛି । କୋରାପୁଟ ଜିଲ୍ଲାର ଢୋଲାଭୂମି ପାଇଁ କେଶରୀ ଓ ପଙ୍କଜକଡ ଭଳି ଦେଶୀ କିସମ ଧାନ ଉପଯୁକ୍ତ ବୋଲି ଗବେଷଣାରୁ ଜଣାପଡିଛି ।

# ନଗର ପରିମଳ

ନଗର ଉନ୍ନୟନ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଦୋଳଗୋବିନ୍ଦ ପ୍ରଧାନ ୧୧.୧.୯୦ ପୂର୍ବାହ୍ନ ୧୦ ଘଟିକା ସମୟରେ କଟକ ମ୍ୟୁନିସିପାଲିଟି କାର୍ଯ୍ୟାଳୟ ଅଚାନକ ଭାବେ ପରିଦର୍ଶନ କରିଥିଲେ । ଶ୍ରୀ ପ୍ରଧାନ କର୍ମଚାରୀମାନଙ୍କ ଉପସ୍ଥାନ ରେଜିଷ୍ଟର୍ ଓ ନିର୍ଦ୍ଧାରିତ ଦୈନିକ କାର୍ଯ୍ୟକ୍ରମ ପୁସ୍ତିକା ସମୀକ୍ଷା କରିଥିଲେ । ସହରର ଅସ୍ୱାସ୍ଥ୍ୟକର ପରିବେଶ ଓ ପରିମଳ ଅବ୍ୟବସ୍ଥା ସମ୍ପର୍କରେ କ୍ଷୋଭ ପ୍ରକାଶ କରି ମ୍ୟୁନିସିପାଲିଟି କର୍ତ୍ତୃପକ୍ଷ ଜାନୁଆରୀ ୧୨ ତାରିଖରୁ କଟକ ସହରରେ ଆରମ୍ଭ ହେଉଥିବା ପରିମଳ ପକ୍ଷ ପାଳନ କାର୍ଯ୍ୟକ୍ରମକୁ ସଫଳ କରିବା ପାଇଁ ମନ୍ତ୍ରୀ ନିର୍ଦ୍ଦେଶ ଦେଇଥିଲେ । ମ୍ୟୁନିସିପାଲିଟି ସ୍ୱାସ୍ଥ୍ୟ ଅଧିକାରୀଙ୍କ କାର୍ଯ୍ୟାଳୟ ପରିଦର୍ଶନ କରି ମ୍ୟୁନିସିପାଲିଟି ଅଧୀନରେ ଥିବା ଚିକିତ୍ସାଳୟଗୁଡିକୁ ଔଷଧପତ୍ର ଯୋଗାଣ ଓ ଚିକିତ୍ସା ବ୍ୟବସ୍ଥା ସମ୍ପର୍କରେ ତଦାରଖ କରିଥିଲେ । ମ୍ୟୁନିସିପାଲିଟି ପୂର୍ତ୍ତ ବିଭାଗ ଶାଖା ପରିଦର୍ଶନ କରି ରାସ୍ତାଘାଟ ମରାମତି ଓ ବିଦ୍ୟୁତ୍ ଆଲୋକ ଯୋଗାଣ ସମ୍ପର୍କରେ ତ୍ୱରାନ୍ୱିତ କାର୍ଯ୍ୟକ୍ରମ ଗ୍ରହଣ କରିବାକୁ ସେ ବିଭାଗୀୟ ଅଧିକାରୀଙ୍କୁ ନିର୍ଦ୍ଦେଶ ଦେଇଥିଲେ । ମେହେନ୍ତର ସଂଘ କାର୍ଯ୍ୟାଳୟ ପରିଦର୍ଶନ କରି ସଂଘର ସଭାପତି ଶ୍ରୀ ବିଶ୍ୱନାଥ ପଣ୍ଡିତଙ୍କ ସହ ମେହେନ୍ତରମାନଙ୍କ ସମସ୍ୟା ସମ୍ପର୍କରେ ଆଲୋଚନା କରିଥିଲେ ।

ପରେ ପରେ ଶ୍ରୀ ପ୍ରଧାନ ଶିଖରପୁର, ମାଲଗୋଦାମ ଓ ସହର ଉପକଣ୍ଠ ଗୋପାଳପୁର ଅକ୍ଟ୍ରାଇ ଚେକ୍‌ପୋଷ୍ଟ ଘାଟିକୁ ଅଚାନକ ତଦନ୍ତ କରି ମ୍ୟୁନିସିପାଲିଟିର ଦୈନନ୍ଦିନ ଆୟ ବିବରଣୀ ଯାଞ୍ଚ କରିଥିଲେ ଏବଂ ଅକ୍ଟ୍ରାଇ ଟିକସ୍ କିପରି ଆଦାୟ କରାଯାଉଛି, ତାହାର ସମୀକ୍ଷା କରିଥିଲେ । ଅକ୍ଟ୍ରାଇ ସୂତ୍ରରୁ କିପରି ଆୟ ବୃଦ୍ଧି ପାଇବ, ସେଥିପ୍ରତି ଯତ୍ନଶୀଳ ହେବାକୁ ସେ ଉପସ୍ଥିତ କର୍ମଚାରୀମାନଙ୍କୁ ପରାମର୍ଶ ଦେଇଥିଲେ । ସେଦିନର ଆୟ, ତାହା ତତ୍‌ପର ଦିନ ଯେପରି ମ୍ୟୁନିସିପାଲିଟି ତହବିଲରେ ଜମାହୁଏ ଏବଂ ତାହାର ଯେପରି ବ୍ୟତିକ୍ରମ ନ ଘଟେ, ସେଥିପ୍ରତି କର୍ମଚାରୀମାନେ ତୀକ୍ଷ୍ଣ ଦୃଷ୍ଟି ଦେବାକୁ ମନ୍ତ୍ରୀ ନିର୍ଦ୍ଦେଶ ଦେଇଥିଲେ । ଏ ସମ୍ପର୍କୀୟ କାଗଜପତ୍ର ମନ୍ତ୍ରୀଙ୍କ ସମୀକ୍ଷା ପାଇଁ ଉପସ୍ଥାପନ ହେବା ସକାଶେ ମ୍ୟୁନିସିପାଲିଟି ଏକ୍‌ଜିକ୍ୟୁଟିଭ୍ ଅଫିସରଙ୍କୁ ସେ ନିର୍ଦ୍ଦେଶ ଦେଇଥିଲେ ।

# କୃଷି ସମ୍ପ୍ରସାରଣ ଶିକ୍ଷା

*ଡକ୍ଟର୍ ଲକ୍ଷ୍ମୀ ନାରାୟଣ କର*

ଓଡ଼ିଶାର ସର୍ବାଙ୍ଗୀନ ଉନ୍ନତି ଦିଗରେ କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ ନିରବଚ୍ଛିନ୍ନ ସେବା କରି ଆସୁଅଛି । ରାଜ୍ୟର ହଜାର ହଜାର କୃଷକ, କୃଷି ଶ୍ରମିକ, କୃଷକ ମହିଳା ତଥା ଆଦିବାସୀ ହରିଜନ ପରିବାରମାନଙ୍କୁ ଉପଯୁକ୍ତ ସମ୍ପ୍ରସାରଣ ଶିକ୍ଷା ମାଧ୍ୟମରେ ବିଭିନ୍ନ ଧନ୍ଦା ବିଷୟରେ ଶିକ୍ଷା ଦେଇ ସେମାନଙ୍କର ଆର୍ଥିକ ତଥା ପାରିବାରିକ ଅବସ୍ଥାର ଉନ୍ନତି ପାଇଁ ବିଶ୍ୱବିଦ୍ୟାଳୟର ସମ୍ପ୍ରସାରଣ ଶିକ୍ଷା ବିଭାଗ ଦିଗ୍‌ଦର୍ଶନ ଦେଇ ଆସୁଛି । ଏହି କାର୍ଯ୍ୟକ୍ରମଗୁଡ଼ିକୁ ଆହୁରି ବ୍ୟାପକ ଓ ଫଳପ୍ରଦ କରିବା ପାଇଁ ବିଶ୍ୱବିଦ୍ୟାଳୟ କର୍ତ୍ତୃପକ୍ଷ ସବୁବେଳେ ଉଦ୍ୟମ ଚଳାଇ ଅଛନ୍ତି ।

## ସମ୍ପ୍ରସାରଣ ଶିକ୍ଷାର ଉଦ୍ଦେଶ୍ୟ

"ସମ୍ପ୍ରସାରଣ" ଏକ ଶିକ୍ଷା ଯୋଜନା । ଗାଁ ଗହଳିରେ ରହୁଥିବା ନିରକ୍ଷର ବା ଅଳ୍ପ ଶିକ୍ଷିତ କୃଷକ, ଗୋପାଳକ, ମତ୍ସ୍ୟଚାଷୀ, ଫଳଚାଷୀ, କୃଷି ଶ୍ରମିକ ଓ କୃଷକ ମହିଳାମାନଙ୍କୁ କୃଷି, ପଶୁପାଳନ, ମତ୍ସ୍ୟଚାଷ, ଫଳଚାଷ, ପରିବାର କଲ୍ୟାଣ, ସ୍ୱାସ୍ଥ୍ୟରକ୍ଷା ଓ ପରିବେଶ ଇତ୍ୟାଦି ବିଷୟରେ ଅତ୍ୟାଧୁନିକ ଶିକ୍ଷା ଦେଇ, ସେଗୁଡ଼ିକୁ ଗ୍ରହଣ କରିବା ଦିଗରେ ସେମାନଙ୍କୁ ଉତ୍ସାହିତ କରିବା ହିଁ ସମ୍ପ୍ରସାରଣ କାର୍ଯ୍ୟର ମୁଖ୍ୟ ଉଦ୍ଦେଶ୍ୟ । ଆମ ଦେଶରେ ବର୍ତ୍ତମାନ କୃଷି, ପଶୁପାଳନ, ଫଳଚାଷ, ମତ୍ସ୍ୟଚାଷ ଇତ୍ୟାଦି ଦିଗରେ ବୈଷୟିକ ଜ୍ଞାନର ଅଭାବ ନାହିଁ । କିନ୍ତୁ ଆମ ଗାଁ ଗହଳିରେ ରହୁଥିବା ଚାଷୀମାନେ ଏହି ସବୁ ବୈଷୟିକ ଜ୍ଞାନ ବିଷୟରେ ଭଲଭାବରେ ଜାଣିପାରନ୍ତି ନାହିଁ । ଯଦିବା, ରେଡ଼ିଓ, ଟେଲିଭିଜନ୍ ବା କୌଣସି ପତ୍ର ପତ୍ରିକା ବା ବ୍ୟକ୍ତିଗତ ସୂତ୍ରରୁ ସେମାନେ କେବେ କଦାଚିତ୍ ଜାଣନ୍ତି ତଥାପି ସେଗୁଡ଼ିକୁ ଗ୍ରହଣ କରିବା ଦିଗରେ ଉତ୍ସାହ ଆଗ୍ରହ ଦେଖାନ୍ତି ନାହିଁ । ଏହି କାରଣରୁ ଆମ ରାଜ୍ୟର ଅଧିକାଂଶ ଚାଷୀ ଏ ପର୍ଯ୍ୟନ୍ତ ବି ଆଧୁନିକ ପ୍ରଣାଳୀରେ ଚାଷ, ଗୋପାଳନ, କୁକୁଡ଼ା ପାଳନ ଇତ୍ୟାଦି ଧନ୍ଦା କରିପାରି ନାହାନ୍ତି ।

ତେଣୁ ଚାଷୀମାନଙ୍କ ନିକଟକୁ ଯାଇ ସେମାନଙ୍କ ସହିତ ଆଲୋଚନା କରି ସେମାନଙ୍କୁ ଶିକ୍ଷା ଦେବା ହିଁ ସମ୍ପ୍ରସାରଣ ବିଭାଗର ପ୍ରଧାନ କାର୍ଯ୍ୟ । ଖାଲି ଶିକ୍ଷା ଦେଲେ ତାହା ସଙ୍ଗେ ସଙ୍ଗେ କାର୍ଯ୍ୟକାରୀ ହୋଇପାରେ ନାହିଁ । ସେଥିପାଇଁ ଚାଷୀମାନଙ୍କ ମନରେ ବିଶ୍ୱାସ ଉଦ୍ରେକ କରି ସେମାନଙ୍କୁ ଉତ୍ସାହିତ କରିବା ସଙ୍ଗେ ସଙ୍ଗେ ସେମାନେ ଯେଉଁ ତାହା ଗ୍ରହଣ କରନ୍ତି, ସେଥିପାଇଁ ସବୁ ପ୍ରକାର ପରାମର୍ଶ ଓ ସାହାଯ୍ୟ ଦେବା ଆବଶ୍ୟକ । ପୁନଶ୍ଚ ସରକାରଙ୍କ ବିଭିନ୍ନ ବିଭାଗ ଯଥା—କୃଷି, ପଶୁପାଳନ, ମତ୍ସ୍ୟଚାଷ, ଫଳଚାଷ, ଜଳସେଚନ, ବିଦ୍ୟୁତ୍, ବ୍ୟାଙ୍କ ଓ ପ୍ରଶାସନ ବିଭାଗ ସହିତ ସମନ୍ୱୟ ରକ୍ଷା କରିବା ହିଁ ଏକାନ୍ତ ଆବଶ୍ୟକ । ଏହି ସମନ୍ୱୟ ଯେତିକି ଫଳପ୍ରଦ ହେବ ସମ୍ପ୍ରସାରଣର ଅବଦାନ ମଧ୍ୟ ସେତିକି ସଫଳ ହେବ ।

ଉପରୋକ୍ତ କାରଣଗୁଡ଼ିକୁ ବିଚାରକୁ ନେଇ କୃଷି ବିଶ୍ୱବିଦ୍ୟାଳୟର ସମ୍ପ୍ରସାରଣ ବିଭାଗ ଚାଷୀମାନଙ୍କର ସେବା କରିବା ପାଇଁ ଉଦ୍ୟମ କରି ଆସୁଅଛି । ସରକାରଙ୍କର କୌଣସି ବିଭାଗ ସହିତ ଏହା ପ୍ରତିଯୋଗିତା କରେ ନାହିଁ ବରଂ ସବୁ ବିଭାଗ ସହିତ ସୁସମ୍ପର୍କ ରକ୍ଷା କରି କାର୍ଯ୍ୟ କରାଯାଇଥାଏ । ଫଳରେ ଚାଷୀମାନଙ୍କ ନିକଟରେ ଏହି ସବୁ କାର୍ଯ୍ୟକ୍ରମ ବେଶ୍ ଆଦୃତ ହୋଇଥାଏ ।

## ବିଶ୍ୱବିଦ୍ୟାଳୟର ସମ୍ପ୍ରସାରଣ କାର୍ଯ୍ୟକ୍ରମ

ବର୍ତ୍ତମାନ ବିଶ୍ୱବିଦ୍ୟାଳୟ ତରଫରୁ ବିଭିନ୍ନ ଯୋଜନା ମାଧ୍ୟମରେ ଓଡ଼ିଶାର ବିଭିନ୍ନ ଅଞ୍ଚଳରେ ସମ୍ପ୍ରସାରଣ କାର୍ଯ୍ୟକ୍ରମ ଚାଲୁ ରହିଛି । ୧୯୬୨ରୁ ଆରମ୍ଭ ହୋଇଥିବା ସମ୍ପ୍ରସାରଣ ବ୍ଲକ୍ ଯୋଜନା ବର୍ତ୍ତମାନ ଓଡ଼ିଶାର ୧୩ଟି ଜିଲ୍ଲାରେ କେତେକ ନିର୍ଦ୍ଦିଷ୍ଟ ଅଞ୍ଚଳରେ କାର୍ଯ୍ୟକାରୀ ହେଉଛି । ଏହି କାର୍ଯ୍ୟକ୍ରମ ମାଧ୍ୟମରେ ଚାଷୀମାନଙ୍କୁ ଉପଯୁକ୍ତ ଶିକ୍ଷା ଦେଇ ଉନ୍ନତ ଚାଷ, ଗୋପାଳନ, ମତ୍ସ୍ୟଚାଷ ଇତ୍ୟାଦି ଗ୍ରହଣ କରିବା ଦିଗରେ ସେମାନଙ୍କୁ ଉତ୍ସାହିତ କରାଯାଉଛି । ଏହାଦ୍ୱାରା ଅନେକ ଚାଷୀ ଉପକୃତ ହୋଇ ସେମାନଙ୍କର ଆର୍ଥିକ ଅବସ୍ଥାରେ ଉନ୍ନତି କରିପାରିଛନ୍ତି ।

## କୃଷି ବିଜ୍ଞାନ କେନ୍ଦ୍ର

ଭାରତୀୟ କୃଷି ଅନୁସନ୍ଧାନ ପରିଷଦଙ୍କ ସହାୟତାରେ ବାଲିଆପାଳ, କେନ୍ଦୁପଡ଼ା, ଭଞ୍ଜନଗର ଓ ସିମୁଳିଗୁଡ଼ାଠାରେ ଚାରୋଟି କୃଷି ବିକାଶ କେନ୍ଦ୍ର ପ୍ରତିଷ୍ଠିତ ହୋଇଛି । ଏହି ସବୁ କେନ୍ଦ୍ରମାନଙ୍କରେ ଚାଷୀମାନଙ୍କ ପାଇଁ

ଉନ୍ନତ ଚାଷ, ଗୋପାଳନ, ମତ୍ସ୍ୟଚାଷ, ଫଳଚାଷ ଇତ୍ୟାଦି ବିଷୟରେ ପ୍ରତ୍ୟକ୍ଷ ଶିକ୍ଷା ଦେବାର ବ୍ୟବସ୍ଥା କରାଯାଇଛି । ସେହି ଅଞ୍ଚଳର ଚାଷୀମାନେ ମଧ୍ୟ କୃଷି ବିକାଶ କେନ୍ଦ୍ରର ବିଶେଷଜ୍ଞମାନଙ୍କଠାରୁ ପରାମର୍ଶ ପାଇପାରୁଛନ୍ତି ।

ବିଜ୍ଞାନାଗାରରୁ କୃଷି କ୍ଷେତ୍ର ଯୋଜନା ମାଧ୍ୟମରେ ପ୍ରାୟ ୩ଠଠ କ୍ଷୁଦ୍ର ତଥା ନାମମାତ୍ର ଚାଷୀମାନଙ୍କର ଆର୍ଥିକ ବିକାଶ ଦିଗରେ ବିଶ୍ୱବିଦ୍ୟାଳୟର ବୈଜ୍ଞାନିକମାନେ ଉଦ୍ୟମ ଚଳାଇଛନ୍ତି । ହରିଜନ ଓ ଅନ୍ୟାନ୍ୟ ଅନୁନ୍ନତ ଲୋକମାନଙ୍କ କଲ୍ୟାଣ ପାଇଁ ଏକ ସ୍ୱତନ୍ତ୍ର କାର୍ଯ୍ୟକ୍ରମ ପୁରୀ ଓ କଟକ ଜିଲ୍ଲାରେ କାର୍ଯ୍ୟକାରୀ ହେଉଛି । କୋରାପୁଟ, କେନ୍ଦୁଝର ଓ ଫୁଲବାଣୀ ଜିଲ୍ଲାରେ ଆଦିବାସୀ କଲ୍ୟାଣ ତଥା ପୁରୀ ଓ କୋରାପୁଟ ଜିଲ୍ଲାରେ କାର୍ଯ୍ୟକାରୀ ଗବେଷଣା ପ୍ରକଳ୍ପ ମାଧ୍ୟମରେ ଚାଷୀମାନଙ୍କର ଆର୍ଥିକ ଉନ୍ନତି ପାଇଁ ଉଦ୍ୟମ ଅବ୍ୟାହତ ରହିଛି । ରାଜ୍ୟର ଦୂରଦୂରାନ୍ତର ଗ୍ରାମମାନଙ୍କରେ ରହୁଥିବା ଚାଷୀମାନଙ୍କୁ ବୈଷୟିକ ଜ୍ଞାନ ଯୋଗାଇ ଦେବା ପାଇଁ ଦୂର ଶିକ୍ଷା କାର୍ଯ୍ୟକ୍ରମ ଆରମ୍ଭ କରାଯାଇଛି । ଏହି କାର୍ଯ୍ୟକ୍ରମ ମାଧ୍ୟମରେ ଚାଷୀମାନେ ଚାହୁଁଥିବା ବୈଷୟିକ ତଥ୍ୟ ଡାକ ଯୋଗେ ଯୋଗାଇ ଦିଆଯାଉଛି । ଚାଷୀମାନଙ୍କୁ କୃଷି, ପଶୁପାଳନ, ଫଳଚାଷ ଇତ୍ୟାଦି ବିଷୟରେ ତଥ୍ୟ ଜଣାଇବା ଉଦ୍ଦେଶ୍ୟରେ "ଚାଷୀର ସଂସାର" ଓ "ଚାଷୀର ସାଥୀ" ନାମକ ଦୁଇଟି ପତ୍ରିକା ଓ ଅନ୍ୟାନ୍ୟ ପତ୍ର ପତ୍ରିକା ପ୍ରକାଶିତ ହୋଇଛି ।

ବିଶ୍ୱବିଦ୍ୟାଳୟ ସମ୍ପ୍ରସାରଣ ବିଭାଗ ସାରା ରାଜ୍ୟରେ କାର୍ଯ୍ୟ କରିବା ପାଇଁ ଉଦ୍ଦିଷ୍ଟ ନୁହେଁ । ଏହା କେତେକ ଅଞ୍ଚଳର ସମ୍ପ୍ରସାରଣ ଶିକ୍ଷା ପ୍ରଣାଳୀର ସଫଳ ପ୍ରୟୋଗ ଦେଖାଇ ବିଭିନ୍ନ ବିଭାଗର କ୍ଷେତ୍ର କର୍ମଚାରୀମାନଙ୍କୁ ତାଲିମ ଦେବା ପାଇଁ ଉଦ୍ଦିଷ୍ଟ । ସେଥିପାଇଁ ଏହି ବିଭାଗ ଦ୍ୱାରା କୃଷି, ପଶୁପାଳନ, ବ୍ୟାଙ୍କିଙ୍ଗ, ସମବାୟ, ଜଙ୍ଗଲ ତଥା ପ୍ରଶାସନ ବିଭାଗର ଅଫିସରମାନଙ୍କୁ ତାଲିମ ଦେବା ପାଇଁ ବ୍ୟବସ୍ଥା ହୋଇଛି । ଏହା ବ୍ୟତୀତ ଯେ କୌଣସି ଚାଷୀ ଯେ କୌଣସି ସମୟରେ ବିଶ୍ୱବିଦ୍ୟାଳୟକୁ ଆସି ତାହାର ସମସ୍ୟା ସମାଧାନ ଦିଗରେ ବିଶେଷଜ୍ଞମାନଙ୍କ ସହିତ ପରାମର୍ଶ କରିବା ପାଇଁ ମଧ୍ୟ ସୁଯୋଗ ପାଇ ପାରୁଅଛି ।

ନିର୍ଦ୍ଦେଶକ,
ସମ୍ପ୍ରସାରଣ ଶିକ୍ଷା କାର୍ଯ୍ୟକ୍ରମ,
ଓଡ଼ିଶା କୃଷି ବୈଷୟିକ ମହାବିଦ୍ୟାଳୟ,
ଭୁବନେଶ୍ୱର ।

## ଅଗ୍ନ୍ୟୁତ୍ପାତ ପାଇଁ ରିଲିଫ୍

ଢେଙ୍କାନାଳ ଜିଲ୍ଲା ଛେଣ୍ଡିପଦା ତହସିଲ ଅନ୍ତର୍ଗତ ମାରୁଡିପି ଗ୍ରାମର ଘରପୋଡି ବିପନ୍ନ ୧୭ଟି ପରିବାରଙ୍କୁ ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିରୁ ଦୁଇଶହ ଟଙ୍କା କରି ମୋଟ ୩,୪୦୦ ଟଙ୍କା ମଞ୍ଜୁର କରାଯାଇଛି ।

ଭାରତୀୟ ରେଡକ୍ରସ୍ ସୋସାଇଟି ଓଡିଶା ଶାଖା ପକ୍ଷରୁ ପ୍ରତ୍ୟେକ ପରିବାରକୁ ଖଣ୍ଡେ ଲେଖାଏଁ ଧୋତି, ଶାଢୀ, ଚଦର ଓ ଚାରି ଲିଟର୍ ଖାଇବା ତେଲ ଯୋଗାଇ ଦିଆଯାଇଛି । ଏହା ବ୍ୟତୀତ ନିୟମ ଅନୁଯାୟୀ ପୂର୍ବରୁ ଖାଦ୍ୟସାମଗ୍ରୀ ଓ ଘର ତିଆରି କରିବା ପାଇଁ ଉପକରଣ ଇତ୍ୟାଦି ଛେଣ୍ଡିପଦା ତହସିଲଦାରଙ୍କ ଜରିଆରେ ଯୋଗାଇ ଦିଆଯାଇଥିଲା ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଗତ ଡିସେମ୍ବର ମାସରେ ମାରୁଡିପି ଗ୍ରାମର ଘର ପୋଡିଯିବା ଖବର ପାଇ ସୂଚନା ଓ ଲୋକ ସମ୍ପର୍କ ଏବଂ ଉଠା ଜଳସେଚନ ବିଭାଗ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଅମର ପ୍ରଧାନ ଉକ୍ତ ଗ୍ରାମ ପରିଦର୍ଶନରେ ଯାଇଥିଲେ ଏବଂ ବିପନ୍ନ ପରିବାରଙ୍କ ଅବସ୍ଥା ଅନୁଧ୍ୟାନ କରିଥିଲେ । ରାଷ୍ଟ୍ରମନ୍ତ୍ରୀଙ୍କ ଅନୁରୋଧ କ୍ରମେ ମୁଖ୍ୟମନ୍ତ୍ରୀଙ୍କ ରିଲିଫ୍ ପାଣ୍ଠିରୁ ଆର୍ଥିକ ସାହାଯ୍ୟ ଏବଂ ରେଡକ୍ରସ୍ ପକ୍ଷରୁ ଉପରୋକ୍ତ ସାହାଯ୍ୟ ଯୋଗାଇ ଦିଆଯାଇଛି । ରାଷ୍ଟ୍ରମନ୍ତ୍ରୀଙ୍କ ନିର୍ଦ୍ଦେଶ କ୍ରମେ ସରକାରୀ ସାହାଯ୍ୟ ପ୍ରଦାନକୁ ମଧ୍ୟ ତ୍ୱରାନ୍ୱିତ କରାଯାଇଛି ।

# ଛୋଟଚାଷୀଙ୍କ ପାଇଁ ସମନ୍ୱିତ କୃଷି ଓ କୃଷି ଭିତ୍ତିକ ପନ୍ଥା

ଡଃ ମନୋରଞ୍ଜନ ରାୟ

ଛୋଟ ଚାଷୀ ଓ ନାମମାତ୍ର ଚାଷୀ କେବଳ ଫସଲ ଚାଷ କରି ତା'ର ଗୁଜରାଣ ମେଣ୍ଟାଇବା ସଙ୍ଗେ ସଙ୍ଗେ ପିଲାଙ୍କର ଶିକ୍ଷା ଦୀକ୍ଷା, ସ୍ୱାସ୍ଥ୍ୟ ଓ ବାସଗୃହ ପାଇଁ ସକଳ ଯୋଗାଡ଼ କରିବା ଆଜିକାର ମହଙ୍ଗା ଯୁଗରେ ସମ୍ଭବ ହେଉନାହିଁ। ଚାଷ କର୍ମ ବ୍ୟତୀତ ଅନ୍ୟ ସମୟରେ ରୋଜଗାର କରିବାର କିଛି ଅବଲମ୍ବନ ନାହିଁ। ତେଣୁ ଫସଲ ଚାଷ ସାଙ୍ଗକୁ କିଛି ନା କିଛି କୃଷିଭିତ୍ତିକ ପନ୍ଥା ଯଥା : ଫଳଚାଷ, ମାଛଚାଷ, ଗୋପାଳନ, ଛେଳି ମେଣ୍ଢା ପାଳନ, କୁକୁଡ଼ା ବତକ ପାଳନ, ଛତୁଚାଷ ଓ ମହୁଚାଷ ଇତ୍ୟାଦି ଗ୍ରହଣ କଲେ ଚାଷୀର ଆର୍ଥିକ ମାନଦଣ୍ଡ ବୃଦ୍ଧି ପାଇବ। ବର୍ଷସାରା ପରିବାରର ଲୋକେ କାର୍ଯ୍ୟରତ ରହିପାରିବେ। ଗୋଟିଏ ଧନ୍ଦାରୁ କ୍ଷତି ହେଲେ ଅନ୍ୟ ଗୋଟିଏ ଧନ୍ଦାରୁ ତାହା ଭରଣା ହୋଇପାରିବ। ଯଦିଓ ଗାଁ ଗହଳରେ ଚାଷୀମାନେ ଉପରୋକ୍ତ ଧନ୍ଦାଗୁଡ଼ିକରୁ ଅଳ୍ପ ବହୁତେ ଲାଭ ପାଆନ୍ତି, କିନ୍ତୁ ତାକୁ ବ୍ୟବସାୟିକ ଦୃଷ୍ଟିକୋଣରୁ ବିଚାର କରନ୍ତି ନାହିଁ। ଦେଶୀ ଗାଈ ଗୋରୁ ପାଳନ କରିବା ଏକ ଚିରାଚରିତ ପନ୍ଥା। ଅଣ୍ଡିରା ବାଛୁରୀ ବଳଦ ହୋଇ ଚାଷ କାମରେ ସାହାଯ୍ୟ କରେ। ଗାଈ ଗୋଚରରେ ବୁଲାବୁଲି କରି ଆସି ଯାହା ଦୋପେ କ୍ଷୀର ଦିଏ ତାହା ଯଥେଷ୍ଟ। ଖତ ପାଇଁ ଗୋପାଳନ ହିଁ ପ୍ରଧାନ ପନ୍ଥା। ସେହିପରି ଘର ତୋଳିବା ପାଇଁ ବା ଜମି ପୋତିବା ପାଇଁ ଅନ୍ୟ ଏକ ଜମିରୁ ମାଟି ଖୋଳି ସୃଷ୍ଟି ହୋଇଥିବା ଛୋଟ ପୋଖରୀରୁ ଯାହା କିଛି ମାଛ ମିଳେ ତାହା କେବଳ ଚାଷୀର ପାରିବାରିକ ଆବଶ୍ୟକତା ମେଣ୍ଟାଇଥାଏ। ଦୁଇ ଚାରିଟା କୁକୁଡ଼ା ବା ବତକ ପାଳନରେ ଅଳ୍ପ ପରିମିତ ଅଣ୍ଡା ବା ମାଂସ ପାଏ। ପଡ଼ି ଯାଉଥିବା ନଡ଼ାରେ ଯଦି ପରାଳ କେତେବେଳେ ପାଳ ଛତୁ ମଧ୍ୟ ପାଇଥାଏ। ଏ ସବୁରୁ ବିଚାରକୁ ନେଲେ ଚାଷୀ ଫସଲ ଉତ୍ପାଦନବ୍ୟତୀତ ଅନ୍ୟ କିଛି କରୁଛି, କିନ୍ତୁ ତାହା ବିଜ୍ଞାନ ସମ୍ମତ ବା ଯୋଜନାବଦ୍ଧ ନୁହେଁ। ମୋଟାମୋଟି ଏ ସବୁ ଚାଷୀର ଅଧିକ ଉନ୍ନତି ଆଣି ପାରିବ। ତେଣୁ ଚାଷୀ ତା'ର ଜମି, ପାରିପାର୍ଶ୍ୱିକ ପରିସ୍ଥିତି, ବଜାରର ସୁବିଧା ଓ ତା'ର ଆଗ୍ରହ ପ୍ରତି ଦୃଷ୍ଟି ରଖି ସମନ୍ୱିତ ଭାବେ କୃଷି ଓ ଆନୁଷଙ୍ଗିକ ଉତ୍ପାଦନ ପନ୍ଥାକୁ ଏକ ସମୟରେ ଅବଲମ୍ବନ କରିବା ଉଚିତ୍। ଏଥିପାଇଁ ସେ ଯେଉଁ ସବୁ ଧନ୍ଦା କରି ପାରିବ ତାହାର ଏକ ସୂକ୍ଷ୍ମ ବିବରଣୀ ନିମ୍ନରେ ପ୍ରଦତ୍ତ ହେଲା :

## ଶସ୍ୟ ଉତ୍ପାଦନ :

ଯଦି ପାଣିର ସୁବିଧା ଥାଏ ତେବେ ଗୋଟିଏ ଏକର ଜମିରୁ ଜଣେ ଚାଷୀ ତା'ର ପାଞ୍ଚ ଛଅ ଜଣିଆ ପରିବାର ପାଇଁ ବର୍ଷକ ନିମନ୍ତେ ଚାଉଳ, ଡାଲି ଓ ତେଲ ବନ୍ଦୋବସ୍ତ କରିପାରିବ। ବର୍ଷାଦିନେ ଏକ ଏକର ବିଲରେ ଉନ୍ନତ ଅମଳକ୍ଷମ ଧାନ ଯଥା : ଜଗନ୍ନାଥ, ଯଯାତି, ଲଲାଟ, ପ୍ରତାପ, ସାରଥି ବା ପାରିଜାତ ପ୍ରଭୃତି ଧାନ ଚାଷ କଲେ ସେ ଅଠରରୁ କୋଡ଼ିଏ କ୍ୱିଣ୍ଟାଲ ଧାନ ପାଇପାରିବ। ଧାନ ପରେ ଅଧ ଏକର ବିଲରେ ଚିନାବାଦାମ ଚାଷ କଲେ ନିହାତି କମ୍‌ରେ ଚାରି କ୍ୱିଣ୍ଟାଲ ଚିନାବାଦାମ ଫଳିବ ଏବଂ ତାକୁ କଳରେ ପେଡ଼ି ୯୦ କେ: ଜି: ତେଲ ପାଇପାରିବ। ପରିବାରର ତେଲ ଚାହିଦା ମେଣ୍ଟିବା ସଙ୍ଗେ ସଙ୍ଗେ ଅଧାଅଧି ବିକ୍ରି କଲେ ତା'ର କିଛି କଞ୍ଚା ପଇସା ମଧ୍ୟ ମିଳିଯିବ। ଅବଶିଷ୍ଟ ଅଧ ଏକରରେ ସୁପର୍ ଫସ୍‌ଫେଟ୍ ପ୍ରୟୋଗ କରି ମୁଗ ବା ହରଡ଼ ଚାଷ କଲେ ଅନ୍ୟୁନ ଦେଢ଼ କ୍ୱିଣ୍ଟାଲ ଅମଳ ମିଳିବ ଯାହାକି ବର୍ଷକର ଡାଲି ଚାହିଦା ମେଣ୍ଟାଇବ।

## ମାଛ ଚାଷ :

ଆଜିକାଲି ହିସାବ କରି ଦେଖାଯାଇଛି ଯେ, ମାଛ ଚାଷ ସବୁଠାରୁ ଲାଭଜନକ। କ୍ଷତିର ଆଶଙ୍କା ନାହିଁ କହିଲେ ଚଳେ। ନିଜର ପୋଖରୀ ଥିଲେ ପ୍ରାରମ୍ଭିକ ଖର୍ଚ୍ଚ ମଧ୍ୟ ବହୁତ କମ୍। ଅଧ ଏକର ପରିମିତ ପୋଖରୀରେ ପ୍ରାୟ ୧,୦୦୦ ଜାଆଁଳ ଛଡ଼ାଯାଇ ପାରିବ। ଜଳର ବିଭିନ୍ନ ସ୍ତରରେ ମିଶ୍ରିତ ମାଛ ଚାଷ ପ୍ରଣାଳୀ ଅବଲମ୍ବନ କଲେ ଆହୁରି ବେଶୀ ଲାଭ ମିଳିବ। ତେବେ ଉପଯୁକ୍ତ ପରିମାଣରେ ଖାଦ୍ୟ ଦେଲେ ମାଛ ଜାଆଁଳଗୁଡ଼ିକ ୧୦ ମାସ ବେଳକୁ ପ୍ରାୟ ଏକ କେ: ଜି: ହୋଇଯିବେ। ଯଦି ଜଣେ ଚାଷୀ ୫୦୦ଟି ବିକିବା ମାଛ ପାଏ, ତେବେ ସେ ଖୁବ୍ କମ୍‌ରେ ୭,୦୦୦ ଟଙ୍କା ପାଇପାରିବ। ପୋଖରୀ ହୁଡ଼ାରେ କଦଳୀ, ନଡ଼ିଆ, ସପୁରୀ ଲଗାଯାଇ ମଧ୍ୟ ଅଧିକ ରୋଜଗାର କରାଯାଇ ପାରିବ। ଧାନ ଚାଷ ସହିତ ମାଛ ଚାଷ ଆଉ ଗୋଟିଏ ଲାଭଜନକ ଉପାୟ। ପୋଖରୀ ହୁଡ଼ାରେ ୫୦ଟି ଉନ୍ନତ ବତକ ରଖିଦେବାର ବ୍ୟବସ୍ଥା କରିଦେଲେ ସେମାନେ ଦାନା ଓ ପୋକ ଜୋକ ଖାଇ ବଢ଼ିବେ ଓ ତାଙ୍କ ମଳ ଖାଇ ମାଛ ବଢ଼ିବେ। ସେମାନେ

ମାଛଙ୍କର କିଛି କ୍ଷତି କରିବେ ନାହିଁ । ମାଛ ଚାଷ ବାବଦ ଖର୍ଚ୍ଚ କମିଯିବା ସଙ୍ଗେ ସଙ୍ଗେ ଦିନକୁ ହାରାହାରି ୩୦ଟି ବତକ ଅଣ୍ଡା ମିଳିପାରିବ ।

## ଫଳ ଚାଷ ଓ ମହୁ ଚାଷ :

ଡାଳିଆ ଫଳ ଗଛ ଲଗାଇଲେ ଏବଂ ତାହା ଥରେ ଫଳିବାକୁ ଆରମ୍ଭ କଲେ ଅନେକ ବର୍ଷ ପର୍ଯ୍ୟନ୍ତ ନିୟମିତ ଆୟ ହୁଏ । ଯେଉଁଠାରେ ଯେଉଁ ଫଳ ଭଲ ହୁଏ ସେପରି ଫଳ ଗଛ ଲଗାଇବା ଉଚିତ । ଉପକୂଳ ଜିଲ୍ଲାମାନଙ୍କରେ ଅଧ ଏକର ବିଲରେ ୪୦ଟି ଶଙ୍କର ଜାତୀୟ ନଡ଼ିଆ ଲଗାଇଲେ ତାହା ଥରେ ଫଳିବାକୁ ଆରମ୍ଭ କଲେ ନିହାତି କମ୍‌ରେ ବର୍ଷକୁ ୪,୦୦୦ଟି ନଡ଼ିଆ ମିଳିବ, ଯାହାକୁ ବିକି ଚାଷୀ ୬,୦୦୦ ଟଙ୍କା ପାଇବ । ନଡ଼ିଆ ବଗିଚା ଭିତରେ କଲମି ଆମ୍ବ, ଲେମ୍ବୁ ବା କଦଳୀ ଫଳ ଗଛ ହିସାବରେ କୋଳଥ, ରାଶି ଇତ୍ୟାଦିକୁ ମିଶ୍ରିତ ଚାଷ ହିସାବରେ ନିଆଯାଇ ପାରିବ । ବଗିଚା ଚାରିପାଖେ କାଜୁ ବା ଝାଉଁ ଲଗାଇଦେଲେ ତାହା ବାଡ଼ର କାମ ଦେବା ସଙ୍ଗେ ସଙ୍ଗେ କିଛି ପଇସା ରୋଜଗାରର ବାଟ ଫିଟାଇବ । ସେହିପରି କଦଳୀ ଚାଷ କରି ପିପିଲି ଅଞ୍ଚଳରେ ଚାଷୀମାନେ ଏକର ପିଛା ୧୦,୦୦୦ ଟଙ୍କା ପର୍ଯ୍ୟନ୍ତ ଲାଭ କରିପାରୁଛନ୍ତି । ଆଜିକାଲି ଅନୁର୍ବର ତଥା ଉଜୁଡ଼ା ଜାଗାରେ ଝାଉଁ, ଇଉକାଲିପଟାସ୍ ଓ ଶୁକୁଳା ପ୍ରଭୃତି ଗଛକୁ ଜାଳେଣି ପାଇଁ ଲଗାଇ ୧୦ ବର୍ଷ ପରେ ଏକର ପିଛା ଏକ ଲକ୍ଷ ଟଙ୍କା ରୋଜଗାର କରାଯାଇ ପାରୁଛି । ଫଳ ବଗିଚାରେ କେତୋଟି ମହୁ ବାକ୍ସ ରଖିବା ମଧ୍ୟ ଏକ ସହଜସାଧ୍ୟ ରୋଜଗାର ପନ୍ଥା । ଗୋଟିଏ ବାକ୍ସରୁ ନିହାତି କମ୍‌ରେ ବର୍ଷକୁ ୬-୮ କିଲୋ ମହୁ ସଂଗ୍ରହ କରାଯାଇ ପାରିବ ।

## କୁକୁଡ଼ା ପାଳନ :

ମାଂସ ବା ଅଣ୍ଡା ପାଇଁ ବୈଜ୍ଞାନିକ ପ୍ରଣାଳୀରେ କୁକୁଡ଼ା ପାଳନ କଲେ ଅଳ୍ପ ଜାଗା ଓ ଅପେକ୍ଷାକୃତ କମ୍ ମୂଳଧନ ଦରକାର ହୋଇଥାଏ । ଜଣେ ଚାଷୀ ତା'ର ଅନ୍ୟାନ୍ୟ ଚାଷ କାମ ସହିତ ମାଂସ ପାଇଁ କୁକୁଡ଼ା ପାଳନ କରି ପ୍ରତି ମାସରେ ଯଦି ୧୦୦ଟି କୁକୁଡ଼ା ବିକେ, ତେବେ ସମସ୍ତ ଖର୍ଚ୍ଚ ଯାଇ ମାସକୁ ୪୦୦-୫୦୦ ଟଙ୍କା ରୋଜଗାର କରିପାରିବ । କୁକୁଡ଼ାଗୁଡ଼ିକୁ ୮-୧୦ ସପ୍ତାହ ଭିତରେ ବିକିକରି ଦିଆଯିବା ହେତୁ ରୋଗରେ ମରିବାର ଆଶଙ୍କା ମଧ୍ୟ କମ୍ ଥାଏ । ସେହିପରି ଅଣ୍ଡା ପାଇଁ କୁକୁଡ଼ା ପାଳନ କଲେ ସମସ୍ତ ଖର୍ଚ୍ଚ ଯାଇ ଅଣ୍ଡା ବିକି ମାସକୁ ୩୦୦ ଟଙ୍କା ଲାଭ ମିଳିପାରିବ । ଶିକ୍ଷିତ ବେକାର ଯୁବକମାନଙ୍କ ପାଇଁ ଏହା ଏକ ବେଶ୍ ଲାଭଜନକ ଧନ୍ଦା ।

## ଛେଳି ଓ ମେଣ୍ଢା ପାଳନ :

ଯଦିଓ ଚାଷୀମାନେ ଛେଳି ଓ ମେଣ୍ଢା ଇତ୍ୟାଦି ପାଳିଥାନ୍ତି, କିନ୍ତୁ ତାହା ବ୍ୟବସାୟଭିତ୍ତିକ ନୁହେଁ; ଯେଉଁଥିରୁ କି ଆଖିଦୃଶିଆ ଲାଭ ମିଳିବ । ହିସାବରୁ ଦେଖାଯାଇଛି, ଜଣେ ଚାଷୀ ଯଦି ବର୍ଷକୁ ୩୦-୪୦ଟି ଛେଳି ବା ମେଣ୍ଢା ବିକ୍ରି କରିପାରିବ; ତେବେ ସେ ୪-୫ ହଜାର ଟଙ୍କା ରୋଜଗାର କରିପାରିବ । ଉନ୍ନତ ଜାତୀୟା ଛେଳି ମେଣ୍ଢା ରଖିଲେ ପ୍ରତି ଥରକେ ସେମାନେ ୨-୩ଟି ଛୁଆ ଜନ୍ମ କରିବେ, ଫଳରେ ଛେଳି ମେଣ୍ଢାଙ୍କ ସଂଖ୍ୟା ଶୀଘ୍ର ବଢ଼ିବ ଓ ଲାଭ ବେଶୀ ମିଳିବ ।

## ଶଙ୍କର ଜାତୀୟ ଗାଈ ପାଳନ :

ଶଙ୍କର ଜାତୀୟ ଯଥା : ଜର୍ସୀ, ହଲଷ୍ଟିନ୍ ଗାଈ ପାଳନ କଲେ ନିଶ୍ଚିତ ଭାବରେ ଯଥେଷ୍ଟ କ୍ଷୀର ମିଳିବ । ଦାମୀକା ମାଈ ବାଛୁରୀ ପାଇବା ସଙ୍ଗେ ସଙ୍ଗେ ଅଣ୍ଡିରା ବାଛୁରୀକୁ ମଧ୍ୟ ଚାଷ କାମରେ ଲଗାଯାଇ ପାରିବ । ମାତ୍ର ଏ ପ୍ରକାର ଗାଈଗୁଡ଼ିକ ମୂଲ୍ୟବାନ ଓ କ୍ଷୀର ଉତ୍ପାଦନ ପାଇଁ ଦାନା ଆବଶ୍ୟକ କରିଥାନ୍ତି । ତେବେ ଘାସ ଚାଷ କରିବାକୁ ସୁବିଧା ଥିଲେ କ୍ଷୀର ଉତ୍ପାଦନ ଖର୍ଚ୍ଚ କମିଯିବ ଓ ଚାଷୀ ନିଜ ପାଇଁ ପ୍ରଚୁର କ୍ଷୀର ପାଇବା ସଙ୍ଗେ ସଙ୍ଗେ କ୍ଷୀର ବିକ୍ରି କରି ମଧ୍ୟ ଲାଭବାନ ହୋଇ ପାରିବ । ଗାଈଟିକୁ ଜୀବନବୀମା ଅନ୍ତର୍ଭୁକ୍ତ କରାଇ୍ ନେଇଥିଲେ ହଠାତ୍ କ୍ଷତିଗ୍ରସ୍ତ ହେବାର ସମ୍ଭାବନା ନଥାଏ ।

## ପନିପରିବା ଓ ଛତୁ ଚାଷ :

ପନିପରିବା ଗୋଟିଏ ନିତିଦିନିଆ ଆବଶ୍ୟକୀୟ ଜିନିଷ । ଚାହିଦାକୁ ଚାହିଁ ଉତ୍ପାଦନ ହେଉନଥିବାରୁ ସମୟେ ସମୟେ ଦାମ୍ ବହୁତ ବଢ଼ିଯାଏ । ତେଣୁ ଟିକିଏ ଚିନ୍ତାକରି ବିଭିନ୍ନ କିସମର ଯଥା : ସଅଳ, ମଧ୍ୟମ ଓ ବିଳମ୍ବରେ ଅମଳ ହେଉଥିବା ଡାଳିଆ ଚାଷ କଲେ ଅମଳ ଦୀର୍ଘଦିନ ଲାଗିରହିବ ଓ ବଜାରରେ ଚାହିଦା ରହିବ । ନିକଟସ୍ଥ କୃଷି ବିଶେଷଜ୍ଞଙ୍କ ପରାମର୍ଶ ନେଇ ପରିସ୍ଥିତିକୁ ଖାପ୍ ଖୁଆଇଲା ଭଳି ପନିପରିବା ଚାଷ କରିବା ଉଚିତ । ତେଣୁ କେଉଁ ଋତୁରେ କି କି ପନିପରିବା ଚାଷ କରାଯାଇ ପାରିବ ତା'ର ଗୋଟିଏ ତାଲିକା ନିମ୍ନରେ ଦିଆଗଲା ।

### କେଉଁ ଋତୁରେ କି କି ପନିପରିବା ଚାଷ କରାଯାଇ ପାରିବ ।

| ଋତୁ | ପନିପରିବାର ନାମ |
|---|---|
| ବର୍ଷାଦିନେ | ବାଇଗଣ, ଭେଣ୍ଡି, ଜହ୍ନି, ଛଚିନ୍ଦ୍ରା, କାକୁଡ଼ି, ଲଙ୍କାମରିଚ । |
| ଶୀତଦିନେ | କୋବି, ବିଲାତି ବାଇଗଣ, ମୂଳା, ବିନ୍, ଲଙ୍କାମରିଚ, ବାଇଗଣ, ପୋଟଳ, ଶାଗ । |
| ଖରାଦିନେ | ଭେଣ୍ଡି, ଝୁଡ଼ଙ୍ଗ, ବାଇଗଣ, ଖଡ଼ା, ଜହ୍ନି, କାକୁଡ଼ି, କଖାରୁ । |

ପନିପରିବା ଚାଷ ଫଳରେ ଚାଷୀ ନିଜେ ଯଥେଷ୍ଟ ପରିମାଣରେ ପନିପରିବା ଖାଇବା ସଙ୍ଗେ ସଙ୍ଗେ ହାଟ ବଜାରରେ ବିକ୍ରିକରି ନିୟମିତ କିଛି ପଇସା ରୋଜଗାର କରିପାରିବ ।

ଅନ୍ୟାନ୍ୟ ପନିପରିବା ଚାଷ ଭଳି ଆଜିକାଲି ଉନ୍ନତ ପ୍ରଣାଳୀରେ ମଧ୍ୟ ଛତୁ ଚାଷ କରାଯାଇ ପାରୁଛି । ଏହା ପ୍ରଧାନତଃ ଦୁଇ ପ୍ରକାର । ଗୋଟିଏ ପାଳ ଛତୁ ଓ ଅନ୍ୟଟି ଡିଙ୍ଗିରି ଛତୁ । ବୋତଲରେ ମିଳୁଥିବା ଛତୁ ବିହନ କିଣି ଗାଁ ଗହଳରେ ମିଳୁଥିବା ନଡ଼ା, ହରଡ଼ଗଛ ବାଡ଼ିଗ ଚୋକେଇରେ ବା ଅଖା ଇତ୍ୟାଦି ବ୍ୟବହାର କରି ଗୋଟିଏ ଛୋଟ ଘରଟିରେ ଲାଭଜନକ ଭାବରେ ଛତୁ ଚାଷ କରାଯାଇ ପାରିବ । ଆଜିକାଲି ଗାଁ ଗହଳର ଅନେକ ଚାଷୀ କୃଷି ବିଶେଷଜ୍ଞଙ୍କର ପରାମର୍ଶ ନେଇ ଓ ବ୍ୟାଙ୍କରୁ ଋଣ ଆଣି ମାଂସ ପାଇଁ କୁକୁଡ଼ା ପାଳନ ଏବଂ ଛତୁ ଚାଷ ଆରମ୍ଭ କରି ଦେଲେଣି । ଛତୁର ଚାହିଦା ଯଥେଷ୍ଟ ଥିବାରୁ ଯଥେଷ୍ଟ ଲାଭ ହେଉଛି । ତେବେ ଏଥିପାଇଁ ବୈଷୟିକ କୌଶଳ ଆବଶ୍ୟକ । ଗୋଟିଏ ପାଳ ଛତୁ ପଟାଳୀରୁ ସବୁ ଖର୍ଚ୍ଚ ଯାଇ ନିହାତି କମ୍‌ରେ ୨୫ ଟଙ୍କା ଲାଭ ଓ ଗୋଟିଏ ଡିଙ୍ଗିରି ଛତୁ ଡାଲାରୁ ୧୫ ଟଙ୍କା ଲାଭ ମିଳି ପାରୁଛି ।

ପନିପରିବା ଚାଷ ପାଇଁ ଉଦ୍ଦିଷ୍ଟ ଥିବା ସ୍ଥାନରେ ଦୁଇ ବଖରା ଗୁଳଘର କରିଦେଲେ ଫସଲ ରକ୍ଷଣାବେକ୍ଷଣ ସହିତ ଛତୁ ଚାଷ କରାଯାଇ କିଛି ରୋଜଗାର ମଧ୍ୟ କରିହେବ ।

ମୋଟ ଉପରେ ଛୋଟ ଚାଷୀଙ୍କ ପାଇଁ ସମନ୍ୱିତ କୃଷି ଓ କୃଷିଭିତ୍ତିକ ପନ୍ଥାର ପ୍ରଧାନ ଉଦ୍ଦେଶ୍ୟ ହେଉଛି ଯଦି କୌଣସି ନା କୌଣସି କାରଣବଶତଃ ଗୋଟିଏ ଧନ୍ଦାରୁ ଲାଭ ନମିଳିଲା, ତେବେ ଚାଷୀ ହତାଶ ହୋଇ ଭାଙ୍ଗି ପଡ଼ିବ ନାହିଁ କାରଣ ସେ ଅନ୍ୟ ଧନ୍ଦାଗୁଡ଼ିକରୁ କିଛି ଲାଭ ପାଇ ତା'ର କ୍ଷତିକୁ ଭରଣା କରିପାରିବ ଓ ପରିବାରକୁ ଚଳା ପାରିବ ।

ମୁଖ୍ୟ ବୈଜ୍ଞାନିକ,
ସମ୍ପ୍ରସାରଣ ଶିକ୍ଷା ନିର୍ଦ୍ଦେଶାଳୟ,
କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ,
ଭୁବନେଶ୍ୱର ।

## ନୂତନ ଭିତ୍ତି ପ୍ରସ୍ତର ସ୍ଥାପନ

ଗତ ଜାନୁଆରୀ ୬ ତାରିଖରେ ବୀରମହାରାଜପୁର ସବ୍‌ଡିଭିଜନାଲ୍ କାର୍ଯ୍ୟାଳୟର ନିଜସ୍ୱ ନୂତନ ଗୃହ ନିର୍ମାଣ ପାଇଁ ଭିତ୍ତି ପ୍ରସ୍ତର ସ୍ଥାପନ କରାଯାଇଛି । ସେଦିନ ପୂର୍ବାହ୍ନରେ କୃଷି ଓ ସମବାୟ ରାଷ୍ଟ୍ରମନ୍ତ୍ରୀ ଶ୍ରୀ କାର୍ତ୍ତିକ ପ୍ରସାଦ ତରିଆ ୯ ଲକ୍ଷ ଟଙ୍କା ବ୍ୟୟ ଅଟକଳରେ ନିର୍ମିତ ହେବାକୁ ଥିବା ଏହି ନୂତନ ଗୃହର ଶିଳାନ୍ୟାସ କରିଛନ୍ତି । ଏଥିପାଇଁ ଆୟୋଜିତ ଉତ୍ସବରେ ଉଦ୍‌ବୋଧନ ଦେଇ ଶ୍ରୀ ତରିଆ କହିଲେ ଯେ ବୀରମହାରାଜପୁରଠାରେ ଏକ ସ୍ୱତନ୍ତ୍ର ସବ୍‌ଡିଭିଜନାଲ୍ କାର୍ଯ୍ୟାଳୟ ପ୍ରତିଷ୍ଠା ପାଇଁ ଏ ଅଞ୍ଚଳର ଅଧିବାସୀମାନେ ଦୀର୍ଘଦିନ ଧରି ଦାବୀ କରି ଆସୁଥିଲେ । ଜନମତକୁ ସମ୍ମାନ ଦେଖାଇ ସରକାରଙ୍କ ଦ୍ୱାରା ଗତ ୧୯୮୭ ମସିହାରେ ସେଠାରେ ସବ୍‌ଡିଭିଜନାଲ୍ କାର୍ଯ୍ୟାଳୟ ଖୋଲାଯାଇଥିଲା । ସବ୍‌ଡିଭିଜନାଲ୍ କାର୍ଯ୍ୟାଳୟର ନିଜସ୍ୱ ଗୃହ ଓ କର୍ମଚାରୀମାନଙ୍କର ବାସଗୃହ ନିର୍ମାଣ ଲାଗି ଆବଶ୍ୟକ ଅର୍ଥ ମଞ୍ଜୁର କରାଯାଇଥିବା କଥା ସେ ପ୍ରକାଶ କରିଥିଲେ । ଆସନ୍ତା ଜୁନ୍ ମାସ ସୁଦ୍ଧା ନିର୍ମାଣ କାର୍ଯ୍ୟକୁ ସମାପ୍ତ କରିବା ଲାଗି ଶ୍ରୀ ତରିଆ ବିଭାଗୀୟ କର୍ମଚାରୀମାନଙ୍କୁ ନିର୍ଦ୍ଦେଶ ଦେଇଥିଲେ ।

ଏଠାରେ ଉଲ୍ଲେଖ କରାଯାଇପାରେ ଯେ ଏକ ସ୍ୱତନ୍ତ୍ର ସବ୍‌ଡିଭିଜନାଲ୍ କାର୍ଯ୍ୟାଳୟ ଖୋଲାଯିବା ପୂର୍ବରୁ ବୀରମହାରାଜପୁର ଅଞ୍ଚଳର ଲୋକମାନଙ୍କୁ ଓଡ଼ିଶାର ଦୀର୍ଘତମ ତଥା ବୃହତ୍ତମ ମହାନଦୀକୁ ଅତିକ୍ରମ କରି ସୋନପୁର ସବ୍‌ଡିଭିଜନାଲ୍ ଅଫିସ୍‌କୁ ଯିବାକୁ ପଡୁଥିଲା । ଏଥିପାଇଁ ସେମାନଙ୍କୁ ବହୁ ଅସୁବିଧାର ସମ୍ମୁଖୀନ ହେବାକୁ ପଡୁଥିଲା । ଏଠାରେ ନୂତନ ସବ୍‌ଡିଭିଜନାଲ୍ କାର୍ଯ୍ୟାଳୟ ଖୋଲାଯିବା ଦ୍ୱାରା ଲୋକମାନଙ୍କର ଅସୁବିଧା ଦୂର ହୋଇପାରିଥିବା ସଙ୍ଗେ ସଙ୍ଗେ ସେମାନଙ୍କ ମଧ୍ୟରେ ଆନନ୍ଦର ଲହରୀ ଖେଳି ଯାଇଛି ।

# ମୟୂରଭଞ୍ଜ ଜିଲ୍ଲାରେ କୃଷିର ଉନ୍ନତି

ଡକ୍ଟର୍ ଦାମୋଦର ଲେଙ୍କା

**ମ**ୟୂରଭଞ୍ଜ ଓଡିଶାର ଉତ୍ତରୀୟ ମାଳଭୂମି ପ୍ରାକୃତିକ ବିଭାଗର ଏକ ଜିଲ୍ଲା । ଏହି ଜିଲ୍ଲାର କ୍ଷେତ୍ରଫଳ ଏକ ନିୟୁତ ଚାଳିଶ ହଜାର ହେକ୍ଟର୍ । ଚାଷଜମି (ନିଟ୍) ୪,୪୬,୦୦୦ ହେକ୍ଟର୍ । ସରକାରୀ ହିସାବରେ ଏହି ଜିଲ୍ଲାର ଜଙ୍ଗଲ କ୍ଷେତ୍ରଫଳ ୪,୬୯,୦୦୦ ହେକ୍ଟର୍ । ଚାଷଜମିରୁ ୧,୮୮,୦୦୦ ଉଚ୍ଚଜମି, ୧,୪୫,୦୦୦ ହେକ୍ଟର୍ ମଧ୍ୟମ କିସମର ଜମି ଓ ୧,୧୩,୦୦୦ ହେକ୍ଟର୍ ଖାଲଜମି । ଏହି ଅଞ୍ଚଳର ଖାଲଜମି ଉପକୂଳ ଅଞ୍ଚଳର ଖାଲଜମି ଭଳି ନୁହେଁ । ଏହା ଉପକୂଳ ଅଞ୍ଚଳର ମଧ୍ୟମ କିସମ ଜମି ଭଳି ।

ଧାନ ଏ ଜିଲ୍ଲାର ପ୍ରଧାନ ଫସଲ । ୧୯୮୫–୮୬ ମସିହାରେ ୩,୨୬,୦୦୦ ହେକ୍ଟର୍ ଜମିରେ ଖରିଫ୍ ଋତୁରେ ଧାନଚାଷ ହୋଇଥିଲା । ଏହା ଚାଷ ଜମିର ପ୍ରାୟ ୭୧ ଭାଗ । ଅବଶିଷ୍ଟ ଜମିରେ ଅନ୍ୟାନ୍ୟ ଫସଲ ଚାଷ କରାଯାଏ । ଅବଶିଷ୍ଟ ଜମିରେ କ୍ଷୁଦ୍ରଶସ୍ୟ, ମୁଗ, ବିରି, ହରଡ, ଚିନାବାଦାମ, ରାଶି, କନ୍ଦମୂଳ, ଆଖୁ, ଝୋଟ ଇତ୍ୟାଦି ଫସଲ ଚାଷ କରାଯାଏ ।

ନେଟ୍ ଚାଷ ଜମିର ଶତକଡା ମାତ୍ର ପ୍ରାୟ ୨୫ ଭାଗ ଜମିରେ ରବି/ଗ୍ରୀଷ୍ମ ଋତୁରେ ଏକାଧିକ ଫସଲ ଚାଷ କରାଯାଏ । ଏଣୁ ଦେଖାଯିବ ଯେ, ମୟୂରଭଞ୍ଜ ଜିଲ୍ଲାର କୃଷି ମୁଖ୍ୟତଃ ବୃଷ୍ଟିପୁଷ୍ଟ କୃଷି । ୧୯୮୫–୮୬ ସୁଦ୍ଧା ବିଭିନ୍ନ ପ୍ରକାର ସୂତ୍ରରୁ ୬୮,୮୫୦ ହେକ୍ଟର୍ ଓ ରବି ଋତୁରେ ମାତ୍ର ୨୦,୦୦୦ ହେକ୍ଟର୍ ଜମିରେ ଜଳସେଚନର ସୁବିଧା କରାଯାଇ ପାରିଛି । କିନ୍ତୁ ପ୍ରକୃତ ଜଳସେଚନ ପରିମାଣ ଏହାଠାରୁ କମ୍ । ବୃହତ୍ ଓ ମଧ୍ୟମ ଯୋଜନା ଦ୍ୱାରା ଖରିଫ୍ ଋତୁରେ ୨୪,୫୨୦ ହେକ୍ଟର୍ ଓ ରବି ଋତୁରେ ୭,୮୭୦ ହେକ୍ଟର୍ ଜଳସେଚନ ସୁବିଧା ଅଛି । ଏହାର ହିସାବ ନିମ୍ନରେ ଦିଆଗଲା ।

| | ଜଳସେଚନ ସୂତ୍ର | ଖରିଫ୍ | ରବି | ମୋଟ୍ (ହେକ୍ଟର୍) |
|---|---|---|---|---|
| ୧. | ବୃହତ୍ ଓ ମଧ୍ୟମ ଜଳସେଚନ ଯୋଜନା | ୨୪,୫୨୦ | ୭,୮୭୦ | ୩୨,୩୯୦ |
| ୨. | କ୍ଷୁଦ୍ର ଜଳସେଚନ (ପ୍ରବାହ) | ୨୪,୩୮୦ | — | ୨୪,୩୮୦ |
| ୩. | ଅନ୍ୟାନ୍ୟ (ଯୋର, ପୋଖରୀ, କୂଅ ଇତ୍ୟାଦି) | | | |
| ୩. | କ୍ଷୁଦ୍ର ଜଳସେଚନ (ଉଠା) | ୧୦,୯୫୦ | ୬,୫୭୦ | ୧୭,୫୨୦ |
| ୪. | ଅନ୍ୟାନ୍ୟ (ଯୋର, ପୋଖରୀ, କୂଅ ଇତ୍ୟାଦି) | ୯,୦୦୦ | ୬,୦୦୦ | ୧୫,୦୦୦ |
| | | ୬୮,୮୫୦ | ୨୦,୪୪୦ | ୮୯,୨୯୦ |

ଜଳସେଚନ ପରିମାଣ କମ୍ ହୋଇଥିବାରୁ (ଖରିଫ୍ ଋତୁରେ ନିଟ୍ ଚାଷ ଜମିର ଶତକଡା ୧୫ ଭାଗ ଓ ରବି ଋତୁରେ ମାତ୍ର ୪ ଭାଗ) ଏହି ଜିଲ୍ଲାର କୃଷି ମୁଖ୍ୟତଃ ବୃଷ୍ଟିପୁଷ୍ଟ ।

ରବିଋତୁରେ ଚାଷ କରାଯାଉଥିବା ଫସଲଗୁଡିକ ହେଲେ– ଡାଲିଜାତୀୟ ଫସଲ (କୋଳଥ, ମୁଗ, ବିରି, ବରଗୁଡି, ବୁଟ, ମଟର), ତୈଳବୀଜ (ଚିନାବାଦାମ, ରାଶି, ରବ, ଅଳସୀ, ସୋରିଷ, ଫେସା) । ଜଳସେଚିତ ଅଞ୍ଚଳରେ କିଛି ପରିମାଣରେ ଡାଲୁଅ ଧାନ, ଗହମ ଓ ପନିପରିବା କରାଯାଏ ।

କୃଷି ଭୂପ୍ରକୃତି, ମୃତ୍ତିକାର ଗୁଣ, ବୃଷ୍ଟିପାତ, ଜଳସେଚନ ଓ ଏହି ହେତୁ ଗଢି ଉଠିଥିବା ପରିସମ୍ପତ୍ତି ଉପରେ ନିର୍ଭର କରିଥାଏ । ମୃତ୍ତିକା ଶିଳାର ଗୁଣ, ତାପମାନ ଓ ବର୍ଷା ଉପରେ ନିର୍ଭର କରେ । ମୟୂରଭଞ୍ଜର ହାରାହାରି ବୃଷ୍ଟିପାତ ୧୫୯ ସେ.ମି. (୧୯୦୧–୧୯୮୫) । ୧୯୬୦ ମସିହା ପରେ ଏହାର ବୃଷ୍ଟିପାତ ୨୨ ସେ.ମି. ହ୍ରାସ ପାଇଛି ବୋଲି ଗବେଷଣାରୁ ଜଣାପଡେ (ଲେଙ୍କା ୧୯୮୮) । ମାସିକ ହାରାହାରି ବୃଷ୍ଟିପାତରୁ ଜଣାପଡେ ଯେ ଖରିଫ୍ ଋତୁରେ (ଜୁନ୍, ଜୁଲାଇ, ଅଗଷ୍ଟ, ସେପ୍ଟେମ୍ବର୍) ମୋଟ୍ ବୃଷ୍ଟିପାତର ୮୫ ଭାଗ ମିଳିଥାଏ । ଏହା ପୁଣି ଜୁଲାଇ ଓ ଅଗଷ୍ଟ ମାସରେ । ଜୁନ୍ ଓ ସେପ୍ଟେମ୍ବର ସନ୍ଧିଆ ମାସ । ଏଣୁ ବୃଷ୍ଟିପାତକୁ ଅନୁସାରେ ଲକ୍ଷ୍ୟ କୃଷିକାର୍ଯ୍ୟ କରିବା ଏକାନ୍ତ ଆବଶ୍ୟକ । କାରଣ କୃଷି ଲାଗି ଜଳ ସର୍ବଦୌ ଆବଶ୍ୟକ । ସାର ପ୍ରୟୋଗ ବୃଷ୍ଟି ତଥା ଜଳସେଚନ ନିର୍ଭରଶୀଳ । ଭଲ ବୃଷ୍ଟି ହେଲେ ବେଶୀ ସାର ପ୍ରୟୋଗ କରାଯାଏ । ମରୁଡ଼ିଆ ଅବସ୍ଥା ହେଲେ ସାର ପ୍ରୟୋଗ କମ୍ ହୋଇଥାଏ । ୧୯୮୫–୮୬ ମସିହା ସୁଦ୍ଧା ମୟୂରଭଞ୍ଜ ଜିଲ୍ଲାରେ ହାରାହାରି ମୋଟ ଉପାଦାନ (ଯବକ୍ଷାରଜାନ, ପୋଟାସ୍ ଓ ଫସ୍‌ଫେଟ୍) ମାତ୍ର ୬ କି.ଗ୍ରା. । ଏଥିରୁ ୫୫ ଭାଗ ଯବକ୍ଷାରଜାନ, ୩୦ ଭାଗ ଫସ୍‌ଫେଟ୍ ଓ ଅବଶିଷ୍ଟ ପୋଟାସ୍ । ଏହା ମଧ୍ୟ ଅନୁନ୍ନତ କୃଷିର ଅନ୍ୟ ଏକ ଦିଗ । ଉନ୍ନତ କୃଷି ଲାଗି କେଉଁଟି କାରଣ ଓ କେଉଁଟି ଫଳ ବାଛି ବାହାର କରିବା ସହଜସାଧ୍ୟ ନୁହେଁ । ଏ ଅନୁନ୍ନତ କୃଷି ହେତୁ ଆମେ ଦରିଦ୍ର ନା ଦାରିଦ୍ର୍ୟ ହେତୁ ଆମର କୃଷି ଅନୁନ୍ନତ ? ଏହା ପରସ୍ପର ପ୍ରତି ଏପରି ଜଡିତ ଯେ ଗୋଟିଏ ସାଇକେଲ୍ ଷ୍ଟୋର୍ ଭଳି ।

ଓଡ଼ିଶାର ମୋଟ୍ ଆୟର ୬୪ ଭାଗ କୃଷିରୁ ମିଳୁଛି । ଶିଳ୍ପ ଲାଗି ଆମେ ଅନେକ ଚେଷ୍ଟା କରୁଥିଲେ ମଧ୍ୟ ଅଧିକାଂଶ ଶିଳ୍ପ ରୁଗ୍ଣ ଓ ଅନୁନ୍ନତ ମଧ୍ୟ । ମୟୂରଭଞ୍ଜ ଜିଲ୍ଲାରେ ବଡ ଧରଣର ଶିଳ୍ପ ନାହିଁ । ଆମ କଞ୍ଚାମାଲ ଆମେ ବାହାରକୁ ଯୋଗାଇ ଦେବା ହିଁ ଆମର ଶିଳ୍ପ । ଗୋରୁମହିଷାଣୀ, ବାଦାମ ପାହାଡ଼ରୁ ଲୁହା ଯୋଗାଣ ତାର ଉଦାହରଣ । ଏଣୁ ମୟୂରଭଞ୍ଜ ଜିଲ୍ଲାକୁ ଉନ୍ନତ କରିବାକୁ ହେଲେ ସର୍ବାଦୌ ଏହାର କୃଷିକୁ ଉନ୍ନତ କରିବା ଆବଶ୍ୟକ ।

କୃଷିର ଉନ୍ନତି ଲାଗି ବ୍ଳକ୍ ସ୍ତରରୁ ଜମିର ଭୂ-ପ୍ରକୃତି, ଉର୍ବରତା, ଜଳସେଚନ, ସୁନିଶ୍ଚିତତା ଇତ୍ୟାଦି ଆଖିରେ ରଖି ଯୋଜନା କରିବା ଆବଶ୍ୟକ । ମୟୂରଭଞ୍ଜର ବାରିପଦା ଓ କରଞ୍ଜିଆ ଦୁଇଟି କୃଷି ଜିଲ୍ଲା । ବାରିପଦା ଅଧୀନରେ ୧୪ଟି ବ୍ଳକ୍ ଓ କରଞ୍ଜିଆ ଅଧୀନରେ ୧୨ଟି ବ୍ଳକ୍ ଅଛି । ରାଇରଙ୍ଗପୁର କରଞ୍ଜିଆ କୃଷି ଜିଲ୍ଲା ଅନ୍ତର୍ଗତ । ବୃଷ୍ଟିପାତର ବଣ୍ଟନ ଦୃଷ୍ଟିରୁ କରଞ୍ଜିଆ କୃଷିଜିଲ୍ଲା ଅନ୍ତର୍ଗତ ରାଇରଙ୍ଗପୁର, ତିରିଙ୍ଗି, ଜାମଦା, ବହଳଦା, ବିସୋଇ, ରୋରୁଆଁ ଓ ବାରିପଦା କୃଷି ଜିଲ୍ଲା ଅନ୍ତର୍ଗତ ବାଙ୍ଗିରିପୋଷି, ସାରସକଣା, କୁଳିଅଣା ଓ ଶୁଳିଆପଦା ଅଧିକ ମରୁଡ଼ିଗ୍ରସ୍ତ । ଭୌଗୋଳିକ ଅବସ୍ଥିତି ଦୃଷ୍ଟିରୁ କରଞ୍ଜିଆ କୃଷି ଜିଲ୍ଲା ଅନ୍ତର୍ଗତ ବ୍ଳକମାନଙ୍କ ମଧ୍ୟରୁ ବେଶୀ ବ୍ଳକ୍ ମରୁଡ଼ିଗ୍ରସ୍ତ । ଏଣୁ ପ୍ରତି ବ୍ଳକ୍ ପାଇଁ ଉପଯୁକ୍ତ ଫସଲ ଯୋଜନା ଆବଶ୍ୟକ ।

## ଫସଲ ବାଛିବା

ସବୁ ପ୍ରକାର ଜମିରେ ଧାନଚାଷ କରିବାର କୌଣସି ଯଥାର୍ଥତା ନାହିଁ । ବୃଷ୍ଟିପାତର ଅନିୟମିତତା ହେତୁ ମରୁଡି ମାରିଲେ ସର୍ବ ପ୍ରଥମେ ଧାନ ଫସଲ ଆଗ ବାଧା ପାଏ । ଧାନ ଫସଲ ପାଇଁ (ଜ୍ଯୋହିଆ ଓ ବିଆଳି ଧାନ ପାଇଁ ମଧ୍ୟ) ମୃତ୍ତିକାର ସବୁବେଳେ ସର୍ବୋଚ୍ଚ ଜଳଧାରଣ ସୀମାରେ ଜଳ ରହିବା ଉଚିତ । କିନ୍ତୁ ସବୁବେଳେ ଏହା ସମ୍ଭବ ନୁହେଁ । ଏଣୁ ବ୍ଳକ୍‌ରୁ ନିର୍ଭରଯୋଗ୍ୟ ବୃଷ୍ଟିପାତ ହିସାବକୁ ନେଇ କୃଷି ଯୋଜନା କରିବା ଆବଶ୍ୟକ । ସପ୍ତାହକୁ ୮୦% ସମ୍ଭାବ୍ୟ ପରିମାଣ ୨୦ ମିଲିମିଟରରୁ କମ୍ ହେଲେ ଏହା ଧାନ ପାଇଁ ଉପଯୁକ୍ତ ନୁହେଁ । ଧାନ ଫସଲରୁ ଭଲ ଅମଳ ପାଇବା ପାଇଁ ଅନ୍ୟୁନ ୧୨ଟି ନିରାପଦ ସପ୍ତାହ (ସପ୍ତାହକୁ ସମ୍ଭାବ୍ୟ ୨୦ ମିଲିମିଟର୍) ହେବା ଆବଶ୍ୟକ । ନିରାପଦ ସପ୍ତାହ ସଂଖ୍ୟା ୯ ହେଲେ ଧାନ ସେଠି ନ କରି ଧାନ ଭିନ୍ନ ଅନ୍ୟ ଫସଲ ଚାଷ କରିବା ଉଚିତ । ୯–୧୬ ଭିତରେ ନିରାପଦ ସପ୍ତାହ ହେଲେ ମିଶ୍ରିତ ଚାଷ ଅନୁମୋଦନୀୟ । ବହୁବର୍ଷ ଧରି ପରୀକ୍ଷା କରାଯାଇଥିବା ଫଳାଫଳରୁ ଜଣାପଡେ ଯେ ମାଣ୍ଡିଆ, ଚିନାବାଦାମ, ସୁଆର, ମକା ଓ ହରଡ ଧାନଠାରୁ ବେଶୀ ମରୁଡ଼ି ସହଣି ଫସଲ । ଏ ଅଞ୍ଚଳର ଲୋକ ମାଣ୍ଡିଆ ଖାଆନ୍ତି ନାହିଁ । ଏଣୁ ଚିନାବାଦାମ, ମକା, ହରଡ, ଗବ ଇତ୍ୟାଦି ଫସଲ ଉପରେ ଗୁରୁତ୍ୱ ଦେବା ଆବଶ୍ୟକ ।

କେନ୍ଦୁଝର ଗବେଷଣା କେନ୍ଦ୍ରରୁ ମିଳିଥିବା କେତେକ ଫସଲର ହିସାବ ଦେଉଛି । ଏହା ଦ୍ୱାରା ଆପଣଙ୍କର ହୃଦ୍‌ବୋଧ ହେବ ଯେ ଟିପ ଜମିରେ ଧାନ ଭିନ୍ନ ଅନ୍ୟ ଫସଲ ଚାଷ କଲେ ମରୁଡ଼ିର ବିପଦ ଆଶଙ୍କା କମିଯିବ ଓ ନିର୍ଭରଯୋଗ୍ୟ ଅମଳ ମିଳିବ ଏବଂ ଲାଭ ହେବ ।

### ବିଭିନ୍ନ ଫସଲର ଅମଳ (ହେକ୍ଟର୍ ପ୍ରତି କ୍ୱିଣ୍ଟାଲ୍)

| ଫସଲ | ୧୯୮୯ | ୧୯୯୦ | ହାରାହାରି | ପ୍ରଭେଦ ପରିମାଣ |
|---|---|---|---|---|
| ଧାନ | ଫସଲ ମରା | ୧୬.୫୩ | ୮.୨୬ | ୧୦୦% |
| ମକା | ୨୬.୦୬ | ୩୫.୯୭ | ୩୦.୯୮ | ୧୬ |
| ସୁଆର | ୫୭୦ କ୍ୱିଣ୍ଟାଲ୍ ଗୋ-ଖାଦ୍ୟ ଯୋଗ୍ୟ ଫସଲ | ୨୯ | ୩୦.୨୯ | — |
| ମାଣ୍ଡିଆ | ୨୨୮୦ | ୨୦.୪୦ | ୨୧.୬୦ | ୫.୫ |
| ମୁଗ | ୭.୦ | ୬.୫୯ | ୬.୭୯ | ୩.୧ |
| ଚିନାବାଦାମ | ୧୭.୫ | ୨୧.୧ | ୧୯.୩ | ୯.୩ |
| ହରଡ | ୧୩.୧ | ୭.୦ | ୧୦.୦୫ | ୩.୩ |
| ଗବ | ୨୩.୫୫ | ୨୩.୪୬ | ୨୩.୫୧ | ୦.୨ |

## ୧୯୭୯—ଖରିଫ୍ ଋତୁ, ମରୁଡିଆ ଖରିଫ୍ ଋତୁ

ହାରାହାରି ପରିମାଣର ଖର୍ଚ୍ଚ ଓ ଫସଲର ଦାମ ହିସାବକୁ ନେଇ ଦେଖାଗଲା ଯେ ଧାନରେ ହେକ୍ଟର୍ ପିଛା ୭୨୨ ଟଙ୍କା କ୍ଷତି । କିନ୍ତୁ ମକା, ଯୁଆର, ମାଣ୍ଡିଆ, ମୁଗ, ଚିନାବାଦାମ, କପା ଓ ଗବରେ ଯଥାକ୍ରମେ ୧,୭୦୦, ୧,୮୦୪, ୬୯୦, ୯୮, ୨୯୮୧, ୧,୫୨୦ ଓ ୩,୦୧୭ ଟଙ୍କା ଲାଭ ହେଲା । ଟଙ୍କାଟିଏ ଖର୍ଚ୍ଚ କଲେ ଧାନରେ କ୍ଷତି । କିନ୍ତୁ ମକା, ଯୁଆର, ମାଣ୍ଡିଆ, ମୁଗ, ଚିନାବାଦାମ, କପା ଓ ଗବ ଫସଲ ଯଥାକ୍ରମେ ୮୪ ପଇସା, ୧.୦୫, ୪୭ ପଇସା, ୯୬ ପଇସା, ଟ୧.୬୨, ୬୧ ପଇସା ଓ ୧.୮୦ ଲାଭ ହେଲା । ଏଣୁ ଚିନାବାଦାମ ଓ ଗବରେ ବେଶୀ ଲାଭ ହେଲା । ସ୍ଥାନ ମୃତ୍ତିକାର ଉପଯୋଗିତା ଦେଖି ଫସଲ ବାଛିବା ଆବଶ୍ୟକ ।

## ମିଶ୍ରିତ ଫସଲ

ଆମମାନଙ୍କର ଧାନ ଫସଲ ପାଇଁ ଏତେ ଲୋଭ, ବନ୍ଧନ ଓ ସଭାଗ ଯେ ଯାହାହେଉ ପଛେ ଧାନ ବୁଣା ହେବ । ଏପରି ଅବସ୍ଥାରେ ବିଲରୁ କିଛି ଅମଳ ପାଇବା ପାଇଁ ମିଶ୍ରିତ ଫସଲ କରିବା ଆବଶ୍ୟକ । ଯଦି ଭଲ ବର୍ଷା ହେଲା ଦୁଇଟି ଯାକ ଫସଲ କରିବା ଆବଶ୍ୟକ । "ଯଦି ଦୈବାତ୍ ଫଳ ନାସ୍ତି ଛାୟାକେନ ନିବାର୍ଯ୍ୟତେ" । ଯଦି ଭଲ ବର୍ଷା ହେଲା ଦୁଇଟି ଯାକ ଫସଲରୁ କିଛି ଅମଳ ମିଳିବ । ଅଭାବ ହେତୁ ମରୁଡି ହେଲେ ଧାନ ଫସଲ ସିନା ମରିଯିବ କିନ୍ତୁ ଅନ୍ୟ ଫସଲରୁ ତ କିଛି ଅମଳ ମିଳିବ । ଏଣୁ ଧାନ ସାଙ୍ଗରେ ଅନ୍ୟ ଫସଲ ମିଶାଇ ବା ଧାଡି ଧାଡି କରି ଚାଷ କରାଯିବା ଉଚିତ । ଏହାର କେତେକ ଉଦାହରଣ ନିମ୍ନରେ ଦିଆଗଲା ।

### କେତେକ ମିଶ୍ରିତ ଫସଲର ଉଦାହରଣ (ଅମଳ, ହେକ୍ଟର୍ ପ୍ରତି କ୍ୱିଣ୍ଟାଲ)

| ଫସଲ | ଅମଳ (ହେକ୍ଟର୍ ପ୍ରତି କ୍ୱିଣ୍ଟାଲ୍) | | |
|---|---|---|---|
| | ୧୯୭୯ | ୧୯୮୦ | ହାରାହାରି |
| ଧାନ | ମରୁଡି ହେତୁ ମଲା | ୧୨.୯୩ | ୬.୪୬ |
| କପା | ୧୩.୧୦ | ୭.୦୨ | ୧୦.୦୬ |
| ଗବ | ୨୩.୬୦ | ୨୨.୮୭ | ୨୩.୨୪ |
| ହରଡ | ୮.୬୦ | ୯.୫୦ | ୮.୬୦ |
| କପା + ଧାନ | ୭.୪୦<br>(୦.୬୦) | ୪.୦୫ | ୫.୭୨<br>୨.୮୦ |
| ହରଡ + ଧାନ | ୪.୬୦<br>୦.୩୦ | ୧୦.୩୦<br>୭.୪୬ | ୭.୪୫<br>୩.୩୮ |
| ଗବ + ଧାନ | ୨୩.୫୦<br>୧.୧୦ | ୨୨.୭୮<br>୧.୬୭ | ୨୩.୧୪<br>୧.୩୮ |

## ୧୯୭୯—ମରୁଡି ବର୍ଷ, ଧାନ ଫସଲ ନଷ୍ଟ

ଏହିସବୁ ଉଦାହରଣରୁ ଜଣାପଡୁଛି ଯେ ଢିପଜମିମାନଙ୍କରେ ପରିସ୍ଥିତି ଅନୁସାରେ ଧାନ ଭିନ୍ନ ଅନ୍ୟ ଫସଲ ଓ ଉପର ଜମିର ତଳ ଭାଗରେ ମିଶ୍ରିତ ଫସଲ କରିବା ଆବଶ୍ୟକ ।

## ମଧ୍ୟମ ଓ ଖାଲ ଜମି

ଖରିଫ୍ ଋତୁରେ ଧାନ ଫସଲ ମୁଖ୍ୟତଃ ବୁଣା ଓ ବେଉଷଣ ଧାନ । ଅଳ୍ପ ପରିମାଣରେ ଦାନ ଫସଲ ରୁଆଯାଏ । ଧାନ କିଆରୀ ବେଉଷଣ ହେବା ଉଚିତ କି ନାହିଁ ଏ ବିଷୟରେ ଅନେକ ଗବେଷଣା ଚାଲିଲାଣି । ମୃତ୍ତିକା ଅନୁସାରେ ବେଉଷଣ ଆବଶ୍ୟକ ନ ହୋଇପାରେ । ବେଉଷଣ ହେତୁ ବିଲରେ ଗଛ ସଂଖ୍ୟା ହ୍ରାସ ପାଏ ବୋଲି ଅମଳ ହ୍ରାସ ପାଏ । ଏଣୁ ଆବଶ୍ୟକ ପରିମାଣ ଧାନଗଛ ରହିବା ଆବଶ୍ୟକ । ଏକ କ୍ୱିଣ୍ଟାଲ ଧାନ ଅମଳ ପାଇଁ ଫସଲ ୧.୯ କି.ଗ୍ରା. ଯବକ୍ଷାରଜାନ, ୦.୪ କି.ଗ୍ରା. ଫସ୍‌ଫରସ୍ ଓ ୨.୩ କି.ଗ୍ରା. ପୋଟାସ୍ ଗ୍ରହଣ କରିଥାଏ । ଏହି ପରିମାଣର ସାର ଫସଲକୁ ନ ମିଳିଲେ କ୍ରମେ ଫସଲର ଅମଳ ହ୍ରାସ ପାଏ । ରୁଆ ଜମିରେ ରୋଇବା ସମୟରେ ସାର ଦିଆଯାଏ । କିନ୍ତୁ ବେଉଷଣ ଜମିରେ ଆମେମାନେ ବେଶୀ ସାର ଦେଉନାହୁଁ । କାରଣ ଫସଲ ଉପରେ ଭରସା ନ ଥିବାରୁ କାଳେ ସାରର ଦାମ୍ ବି ବୁଡିଯିବ କି ? କିନ୍ତୁ ପରୀକ୍ଷାରୁ ଜଣାପଡିଛି ଯେ ରୁଆଧାନ ଭଳି ବୁଣା ଓ ବେଉଷଣ ଧାନରେ ସାର ପ୍ରୟୋଗ କଲେ ଅମଳ ବୃଦ୍ଧିପାଇଥାଏ । ବୁଣିବା ବେଳେ ଫସ୍‌ଫେଟ୍ ସାର ବୁଣିଦେଇ ପରେ ଧାନ ବୁଣିଲେ ଓ ଧାନ ଘୋଡେଇବା ପାଇଁ ଯେଉଁ ଓଡକ ହଳ ହୁଏ ସେଥିରେ ଫସ୍‌ଫେଟ୍ ସାର ଚେର ଗ୍ରହଣ କରି ବଢେ । ବୁଆ ଟାଣ ହୁଏ । ବେଉଷଣ ସମୟରେ ଆବଶ୍ୟକ ପରିମାଣ ଯବକ୍ଷାରଯାନର ୫୦ ଭାଗ ଦେଇ ବେଉଷଣ କରାଗଲେ ଗିଲ ଭଲ ବଢେ । ଧାନରେ ଗଣ୍ଠି ଛାଡିବା ବେଳେ (ଲିଙ୍ଗ ସଞ୍ଚାର ବେଳେ) ଆଉ ଅଧେ ସାର ପ୍ରୟୋଗ କଲେ ଧାନର କେଣ୍ଡା ଲମ୍ବ ହୁଏ । କେଣ୍ଡାରେ ଧାନ ସଂଖ୍ୟା ଓ ଧାନର

ଅଧିକ ବୃଦ୍ଧି ପାଏ । ଧାନ ଫୁଲ ଧରିବା ସମୟରେ ପାଣି ଓ ସାର ଠିକ୍ ରହିଲେ ଧାନର ଓଜନ ବଢେ । ଏଣୁ ଅମଳ ବୃଦ୍ଧି ପାଏ । ହିସାବରୁ ଜଣା ପଡୁଛି ଯେ ୧ ବର୍ଗମିଟର୍ ଜମିରେ ୫୦ଟି ବୁଦା ରହିଲେ ଓ ପ୍ରତି ବୁଦାରେ ୬ଟି କେଣ୍ଡା, ପ୍ରତି କେଣ୍ଡାରେ ୧୨୦ ଧାନ ଓ ୧,୦୦୦ ଧାନର ଓଜନ ୨୦ ଗ୍ରାମ ହେଲେ ହେକ୍ଟର୍ ପିଛା ୭.୨ କ୍ୱିଣ୍ଟାଲ୍ ଧାନ ମିଳିବ । କିନ୍ତୁ ବର୍ତ୍ତମାନ ହାରାହାରି ଅମଳ ମାତ୍ର ୧,୬୫୭ କି.ଗ୍ରା. ଧାନ (୧,୧୬୦ କି.ଗ୍ରା. ଚାଉଳ) । ଏହି ହିସାବର ନିହାତି କମ୍‌ରେ ୬୦ ଭାଗ ହେବ ।

## ରବି ଋତୁରେ ସାରର ବ୍ୟବହାର

ଧାନ କାଟିବା ପରେ ମୁଗ, ବିରି, ଫେସା, ସୋରିଷ ଇତ୍ୟାଦି ଫସଲ ବୁଣାଯାଏ । ସେଥିରେ ସାର ଦିଆଯାଏ ନାହିଁ । ଗବେଷଣାର ଫଳାଫଳରୁ ଜଣାପଡିଛି ଯେ କୋଳଥକୁ ମଧ୍ୟ ୨୦ କି.ଗ୍ରା. ଯବକ୍ଷାରଜାନ ଓ ୩୦ କି.ଗ୍ରା. ଫସ୍‌ଫେଟ୍ ଦେଲେ ଅମଳ ଦ୍ୱିଗୁଣିତ ହୁଏ । ଡାଲିଜାତୀୟ ଫସଲ ପାଇଁ ଫସ୍‌ଫେଟ୍ ଅପରିହାର୍ଯ୍ୟ । ଏଣୁ ବୁଣିବା ବେଳେ ନିହାତି କମ୍‌ରେ ୨୦ କି.ଗ୍ରା. ଫସ୍‌ଫେଟ୍ ହାରରେ ସାର ଦେଲେ ମଧ୍ୟ ଯଥେଷ୍ଟ ଉପକାର ମିଳିବ । ଜିଲ୍ଲାରେ ସାରର ବ୍ୟବହାର ବୃଦ୍ଧି ପାଇବ । ଡାଲିଜାତୀୟ ଫସଲକୁ ଫସ୍‌ଫେଟ୍ ଦେଲେ ଏଥିରେ ଥିବା କାଲସିଅମ୍ ଡାଲିଜାତୀୟ ଫସଲ ଗ୍ରହଣ କରିବ ଏବଂ ଫସ୍‌ଫେଟ୍‌ରେ କିଛି ପରିମାଣ ରହିଗଲେ ବର୍ଷା ଦିନେ ଖରିଫ୍ ଧାନ ତାହା ସହଜରେ ପାଇପାରିବ । ଡାଲି ଜାତୀୟ ଫସଲର ଚେର ବହୁତ ଗଭୀରକୁ ଯିବା ମାଟି ଫସ୍‌ଫସିଆ ହେବ । ଚେରରେ ଭାଦୁଡି ସଂଖ୍ୟା ଓ କାର୍ଯ୍ୟକାରିତା ବୃଦ୍ଧି ପାଇବ । ଏହାଦ୍ୱାରା ବେଶୀ ଯବକ୍ଷାରଜାନ ସଂଗୃହୀତ ହୋଇ ପାରିବ । ଫସଲ କାଟି ନେବା ଦ୍ୱାରା ରହିଯାଇଥିବା ଚେର ମାଟିର ଯବକ୍ଷାରଜାନ ଓ ଅଙ୍ଗାର ଅଂଶ ବୃଦ୍ଧି କରିବ । ଫସ୍‌ଫେଟ୍ ସାରରେ ମଧ୍ୟ ଗନ୍ଧକ ଥାଏ । କିଛି ପରିମାଣରେ ଅନ୍ୟାନ୍ୟ ପଦାର୍ଥ ମଧ୍ୟ ଥାଏ । ଏଥିରେ କାଲସିଅମ୍ ଫସଫୋରସ୍ ଓ ଗନ୍ଧକ ଥିବା ହେତୁ ଡାଲିଜାତୀୟ ଫସଲରେ ବେଶୀ ଫୁଲ ଧରେ, ଛୁଇଁ ଧରେ, ଛୁଇଁଗୁଡିକ ଲମ୍ବ ଓ ହୃଷ୍ଟପୁଷ୍ଟ ହୁଏ । ଫସଲ ଦରଡ଼ ମାରିଯାଏ ନାହିଁ । ବୋଡି ତୁଳନାରେ ଦାନାର ଅମଳ ବେଶୀ ହୁଏ । ଡାଲିଜାତୀୟ ଫସଲ ପରେ ଧାନ ମଧ୍ୟ ଭଲ ହୁଏ । ଏଣୁ ଧାନକୁ ସାର ଦେବା ଭଳି ଡାଲିଜାତୀୟ ଫସଲରେ ଧାରାବାହୀ ଭାବେ ଫସଫେଟ୍ ସାର ପ୍ରୟୋଗ କରିବା ଉଚିତ । ଫସଲକୁ ନ ଉପାଡି ଉପରୁ ଦାଆରେ କାଟି ଆଣିବା ଦ୍ୱାରା ମୂଳ ଓ ଚେର ଭାଦୁଡି ମାଟିରେ ରହିଲେ ବିଲର ବେଶୀ ଉପକାର ହେବ । ଏହି ଅଞ୍ଚଳ ପାଇଁ ଉପଯୁକ୍ତ ଫସଲ ଖସଡା ନିମ୍ନରେ ଦିଆଗଲା ।

ଡିପଜମି–

ଏକ ଫସଲି– ଚିନାବାଦାମ/ହରଡ/ମକା/ମୁଗ/ବିରି/ଗଚ ।

ଦୋଫସଲି–ଚିନାବାଦାମ–କୋଳଥ, ଧାନ–ହରଡ, ମକା–କୋଳଥ, ଧାନ–ସୋରିଷ, ଚିନାବାଦାମ–ଗଚ

ମିଶ୍ରିତ ଫସଲ–

ହରଡ + ଧାନ, ହରଡ + ଚିନାବାଦାମ, ହରଡ + ମାଣ୍ଡିଆ, ହରଡ + ମକା

ମଧ୍ୟମ କିସମ ଜମି–

ଦୋଫସଲି– ଧାନ–ମୁଗ/ବିରି/ସୂର୍ଯ୍ୟମୁଖୀ ଧାନ–ସୋରିଷ/ଫେସା/ମୁଗ/ମସୁର

ଖାଲ ଜମି–

ଧାନ–ମୁଗ/ବିରି/ମଟର/ଫେସା (ଛଟା)

ଏହା କେତୋଟି ଉଦାହରଣ ମାତ୍ର । ବିଲକୁ ଖାପଖୁଆଇ ବିଲର ପଠନ ଓ ମୃତ୍ତିକାର ଜଳଧାରଣ ଶକ୍ତି ଓ ବର୍ଷାର ବଣ୍ଟନ ଉପରେ ନିର୍ଭର କରି ଅଭିଜ୍ଞତା ଅନୁସାରେ ଫସଲ ଓ ଏହାର ଅନୁକ୍ରମ ପରିବର୍ତ୍ତନ କରିବା ଆବଶ୍ୟକ ।

## ମୃତ୍ତିକା ଓ ଜଳ ସଂରକ୍ଷଣ

ଏ ଅଞ୍ଚଳର ଭୂ–ପ୍ରକୃତି ଢାଲୁ । ଉପର କିଆରୀରୁ ତଳ କିଆରୀକୁ ପାଣି ସହଜେ ଗଡିଯାଏ । ଗଛର ଜୀବନ ପାଣି । ପାଣି ଗୋଟିଏ କିଆରୀରୁ ବୋହିଗଲେ ସେ ମାଟି ମଧ୍ୟ ଟାଣିନିଏ । ମାଟି ମା'ଟି । ଏହା ଦେହରେ ଥିବା କର୍ଦ୍ଦମ ଅଂଶ ଶରୀରର ମାଂସ ଭଳି । ଯେଉଁ ମାଟିରେ କର୍ଦ୍ଦମ ଅଂଶ ଯେତେ ବେଶୀ ସେ ମାଟି ସେତେ ଉର୍ବର । ସେ ମାଟିରେ ବିଭିନ୍ନ ପ୍ରକାର ଫସଲ ସହଜରେ ଚାଷ କରିହେବ । ଏଣୁ ମାଟିକୁ ସାଇତି ରଖିବା ଆବଶ୍ୟକ । ଉପର କିଆରୀ ମାଟି, ତଳ କିଆରୀକୁ ବୋହି ନ ଯିବା ପାଇଁ, ପାହାଡ ଢାଲରୁ ପାଣି ମନଇଚ୍ଛା ଗଡି ନ ଆସିବା ପାଇଁ ବ୍ୟବସ୍ଥା କରିବା ଅବଶ୍ୟକ । ଢାଲୁ ଜମିକୁ ପଟିପଟି କରି ପାହାଚିଆ କରିବା ଆବଶ୍ୟକ । ପାହାଚର ତଳପଟ ହିଡରେ ମାଟି ବାନ୍ଧି ରଖୁଥିବା ଘାସ ଓ ବେଣା ଲଗାଇବା ଦରକାର । ଏହାଦ୍ୱାରା ପାଣି ଉପରୁ ବୋହିଆସି ହିଡ ପାଖରେ ଅଟକିବ । ମାଟିରେ ଭେଦିବାକୁ ବେଶୀ ସମୟ ମିଳିବ ଓ ବହୁତ ଗଭୀରକୁ ଭେଦିଯିବ । ଏହାଦ୍ୱାରା ଏଥିରେ ଥିବା ସାର ମଧ୍ୟ ତଳକୁ ଯିବ । ବହି ଆସୁଥିବା କର୍ଦ୍ଦମ ଓ ପଟୁ ଅଂଶ ବସିଯାଇ ସେଇ କିଆରୀରେ ରହିବ । ସ୍ଥାନେସ୍ଥାନେ ଛୋଟଛୋଟ ଗାଡିଆ ତିଆରି କରିଦେଲେ ପାଣି ସେଥିରେ ରହିବ ଓ ଦରକାର ବେଳେ ସେ ପାଣି ମଧ୍ୟ ବୋହି ଫସଲକୁ ସେଚନ କରାଯାଇ ପାରିବ । ଏହାଦ୍ୱାରା ମରୁଡି ପ୍ରକୋପରୁ ରକ୍ଷା ମିଳିପାରିବ ।

ଜଳ ବିଭାଜିକା ଅନୁସାରେ ମୃତ୍ତିକା ଓ ଜଳ ସଂରକ୍ଷଣ କରିବା ଓ ଫସଲ କରିବା ଉଚିତ । କ୍ଷୁଦ୍ର ବିଭାଜିକାର ଉପରୁ ତଳ ପର୍ଯ୍ୟନ୍ତ ପଠନ ଅନୁସାରେ ଫସଲ ବାଛି ପାଦଙ୍କ ପ୍ରଣାଳୀ ଅନୁସରଣ କଲେ ମୃତ୍ତିକା ଓ ଜଳର ସୁବିନିଯୋଗ ହେବ । ବିଭିନ୍ନ ପ୍ରକାର ଫସଲ ଉତ୍ପାଦନ ବୃଦ୍ଧି ପାଇବ ଓ ପରିବେଶର ଉନ୍ନତି ହେବ ।

## ଜଳସେଚନ ଓ ଜଳ ବିନିଯୋଗ

ହଳଦିଆ ଓ ବାହାଲତିଆ ଯୋଜନା ଦୁଇଟି ମହାରାଜାଙ୍କ ଅମଳର । ସ୍ୱାଧୀନତା ପରେ ଖଡକେଇ ଓ କାଳେ ଯୋଜନା ହେଲା । ଏବେ ସୁବର୍ଣ୍ଣରେଖା ଆରମ୍ଭ କରାଯାଇଛି । ଜଳସେଚନ ଯୋଜନା ଆମ ଦେଶରେ "ଗୋଦଡା କୋଡନ୍ତି ଯେତେ ମାଡନ୍ତି ସେତେ" ରୀତିରେ ଚାଲିଛି । ଜଳସେଚନ କୃଷିର ଉନ୍ନତି ପାଇଁ । ଏହାର ଉଦ୍ଦେଶ୍ୟ ନୁହେଁ– ଦୁଇଟି ପାହାଡକୁ ଦୁଇପଟୁ ବନ୍ଧେଇ ଦେଇ ଜଳଭଣ୍ଡାର ସୃଷ୍ଟି କରିବା ଓ ତଳ ମୁଣ୍ଡରେ ଅହରହ ଦରକାର ଥାଉ କି ନ ଥାଉ ପାଣି ଛାଡି ଜଳାନୁବେଧନତା ସୃଷ୍ଟି କରିବା । ଉପକୂଳ ଜଳସେଚନ ଏହାର ବିଶିଷ୍ଟ ନମୁନା । ଏ ଅଞ୍ଚଳର ଭୂ–ପ୍ରକୃତି ଅନୁସାରେ ବୃହତର ଯୋଜନା ନ କରି କ୍ଷୁଦ୍ର ଓ ଉଠା ଜଳସେଚନ ପ୍ରତି ବେଶୀ ଧ୍ୟାନ ଦେବା ଦରକାର । ଜଳସେଚନ ଯୋଜନାରୁ ଉପଯୁକ୍ତ ଫଳ ପାଇବା ପାଇଁ ଅନୁରୂପ

ଫସଲ ପର୍ଯ୍ୟାୟ ବାଛିବା ଦରକାର । ଖାଲି ଧାନ ଚାଷ କରି ଜଳାନୁବେଧନତାବୃଦ୍ଧି କରାଯାଉଛି । ତୈଳ ଓ ଡାଲି ଜାତୀୟ ଫସଲ ଏବଂ ଅନ୍ୟାନ୍ୟ ଅର୍ଥକାରୀ ଫସଲ ଚାଷ ହ୍ରାସ ପାଉଛି । ଏହି ଗତବେଇ ଯୋଜନା ୧୯୭୯–୮୦ରୁ କାର୍ଯ୍ୟକାରୀ କରାଯାଇଥିଲେ ମଧ୍ୟ ଏଠି କେବଳ ଧାନ ଉପରେ ପ୍ରାଧାନ୍ୟ ଦିଆଯାଉଥିବାରୁ ଜଳାନୁବେଧନତା ସୃଷ୍ଟି ହେଲାଣି । ଏଣୁ ଏ ପ୍ରକାର ଫସଲ ବିଧି ସର୍ବଦୌ ବର୍ଜନୀୟ । ଗବେଷଣାରୁ ଜଣାପଡୁଛି ଯେ ଏକ ହେକ୍ଟର୍ ସେଣ୍ଟିମିଟର୍ ଜଳରେ ୪୦ କି.ଗ୍ରା ଧାନ ଉତ୍ପାଦିତ ହୋଇପାରିବ । କିନ୍ତୁ ଆମ ରାଜ୍ୟରେ ମାତ୍ର ୧୨–୧୩ କି.ଗ୍ରା ହେଉଛି । ଧାନ କିଆରୀରେ ଦରକାର ନଥିଲେ ବି ପାଣି ଠିଆକରି ରଖାଯାଉଛି । ଏହାଦ୍ୱାରା ଫସଲ ଲାଗି ଜଳଖର୍ଚ୍ଚ ବଢୁଛି । ସାର ଧୋଇହୋଇ ଯାଉଛି, ରୋଗ ପୋକ ବୃଦ୍ଧି ପାଉଛି, ପରିବେଶ ଦୂଷିତ ହେଉଛି । କ୍ରମେ ବହୁବିଧ ଫସଲ ଚାଷ–ଜମି କେବଳ ଧାନଚାଷ ଜମିରେ ପରିଣତ ହେଉଛି । ଏ ସମସ୍ୟାରୁ ରକ୍ଷା ପାଇବା ପାଇଁ ବର୍ତ୍ତମାନ ଆଇନ୍ କାନୁନର ଆଶ୍ରୟ ନେବା ପନ୍ଥା ଗ୍ରହଣ କରିବାକୁ ପଡିବ । ଯେଉଁ ପ୍ରକାର ଜମିରେ ଯେଉଁ ଫସଲ ଉପଯୁକ୍ତ ସେ ଫସଲ ଚାଷ ନ କରି ଅନ୍ୟ ଫସଲ ଚାଷ କଲେ ଚାଷୀ ଆଇନ୍ ଅନୁସାରେ ଦଣ୍ଡିତ ହେବ । ଦ୍ୱିତୀୟ ପନ୍ଥା ହେବ ଧାନର ଜୀବନ କାଳ ଅନୁସାରେ ଜଳକର । ବଡଧାନ ପାଇଁ ବେଶୀ ଜଳକର ଓ ଛୋଟଧାନ ପାଇଁ କମ୍ ଜଳକର । ଜଳଯୋଗାଣ ଓ ନିୟନ୍ତ୍ରଣ ସମସ୍ୟା ଆଲୋଚନା କରିବା ପାଇଁ ସମୟ ନାହିଁ । ଏଥିପାଇଁ କୃଷି ଓ ଜଳସେଚନ ବିଭାଗର ସମନ୍ୱୟ ଆବଶ୍ୟକ । ତାହା ଆଶାନୁରୂପ ହୋଇପାରୁ ନାହିଁ ।

ଏ ଅଞ୍ଚଳ ବିଭିନ୍ନ ପ୍ରକାର ଫଳ ଓ ପନିପରିବା ପାଇଁ ବିଶେଷ ଉପଯୁକ୍ତ । ଓଡିଶାର ଅନ୍ତଃ ଜିଲ୍ଲାର ଶତକଡା ୬୦ ଭାଗ ଜମି ଏଥିପାଇଁ ଉପଯୁକ୍ତ । ଓଡିଶାରେ ଆମ୍ବ, ପଣସର ଆଦି ସମ୍ପତ୍ତି ଭାରତରେ ବିରଳ । ତଥାପି ଆମେ ଆମ ପରିବେଶର ବିନିଯୋଗ କରିପାରୁ ନାହିଁ । ପର ଉପରେ ନିର୍ଭର କରୁଛୁ । "ହାତ କଲେ ଦାନ୍ତ ଖାଏ, ପର ଦେଇଥିଲେ ଉଘଉଥାଏ"– କଥାଟି ଘର, ବାହାର, ରାଜ୍ୟ ଓ ଦେଶ ପାଇଁ ପ୍ରଯୁଜ୍ୟ ।

କୃଷି କଲେଜ୍,
ଭୁବନେଶ୍ୱର–୩

## ଜବାହର ରୋଜଗାର ଯୋଜନା

ଜବାହର ରୋଜଗାର ଯୋଜନାରେ ୧୯୮୯–୯୦ ଆର୍ଥିକ ବର୍ଷରେ ଡିସେମ୍ବର ମାସ ଶେଷ ସୁଦ୍ଧା ୪,୧୪୯ ଲକ୍ଷ ୪୫ ହଜାର ଟଙ୍କା ଖର୍ଚ୍ଚ କରାଯାଇ ୨୧୫ ଲକ୍ଷ ୯୦ ହଜାର ଶ୍ରମଦିବସ ସୃଷ୍ଟି କରାଯାଇଛି । ଏହି କାର୍ଯ୍ୟକ୍ରମରେ ଆଦିବାସୀ, ହରିଜନ ଓ ମହିଳା ଶ୍ରମିକମାନେ ଯଥାକ୍ରମେ ୮୪ ଲକ୍ଷ ୪ ହଜାର, ୬୬ ଲକ୍ଷ ୪୮ ହଜାର, ୪୩ ଲକ୍ଷ ୧୫ ହଜାର ଶ୍ରମଦିବସ ପାଇ ଉପକୃତ ହୋଇଛନ୍ତି । ମଜୁରୀ ବାବଦରେ ମୋଟ୍ ୨,୫୫୯ ଲକ୍ଷ ୮୫ ହଜାର ଟଙ୍କା ଖର୍ଚ୍ଚ ହୋଇଛି । ସେଥିମଧ୍ୟରୁ ୬୬ ଲକ୍ଷ ୪୭ ହଜାର ଟଙ୍କା ମୂଲ୍ୟରେ ୧,୭୫୦ ମେଟ୍ରିକ୍ ଟନ୍ ଚାଉଳ ଓ ୧,୯୨୨ ମେଟ୍ରିକ୍ ଟନ୍ ଗହମ ଶ୍ରମିକମାନଙ୍କୁ ମଜୁରୀର ଅଂଶ ସ୍ୱରୂପ ଦିଆଯାଇଛି ।

ଗତ ଡିସେମ୍ବର ମାସରେ ୮୫୭ ଲକ୍ଷ ୫୩ ହଜାର ଟଙ୍କା ଖର୍ଚ୍ଚରେ ୪୪ ଲକ୍ଷ ୮୪ ହଜାର ଶ୍ରମଦିବସ ସୃଷ୍ଟି କରାଯାଇଥିଲା । ଏଥିରେ ଆଦିବାସୀ, ହରିଜନ ଓ ମହିଳା ଶ୍ରମିକଙ୍କ ପାଇଁ ଯଥାକ୍ରମେ ୧୭ ଲକ୍ଷ ୬୨ ହଜାର, ୧୪ ଲକ୍ଷ ଓ ୮ ଲକ୍ଷ ୯ ହଜାର ଶ୍ରମଦିବସ ସୃଷ୍ଟି କରାଯାଇଥିଲା । ମଜୁରୀ ବାବଦ ମୋଟ ୫୧୧ ଲକ୍ଷ ୭୩ ହଜାର ଟଙ୍କା ଖର୍ଚ୍ଚ ମଧ୍ୟରୁ ୧୨ ଲକ୍ଷ ୯୦ ହଜାର ଟଙ୍କା ମୂଲ୍ୟରେ ୩୨୮ ମେଟ୍ରିକ୍ ଟନ୍ ଚାଉଳ ଓ ୩୧୩ ମେଟ୍ରିକ୍ ଟନ୍ ଗହମ ଶ୍ରମିକମାନଙ୍କୁ ମଜୁରୀର ଅଂଶ ଭାବେ ଦିଆଯାଇଛି ।

# କୀଟନାଶକ ଔଷଧ ପ୍ରୟୋଗ ଓ ବିଷପୂର୍ଣ୍ଣ ଖାଦ୍ୟ ଗ୍ରହଣ

ଡକ୍ଟର୍ ହୃଷୀକେଶ ସେନାପତି

ଆଜି ସବୁଜ ବିପ୍ଳବର ପୂର୍ଣ୍ଣାଙ୍ଗ ଯୋଜନାରେ କୀଟନାଶକ ଔଷଧ ପ୍ରାଧାନ୍ୟ ଲାଭ କରିଛି । ପ୍ରତ୍ୟେକ ଖାଦ୍ୟଶସ୍ୟ, ପନିପରିବା, ଫଳ, ତୈଳବୀଜ, ଡାଲି ଜାତୀୟ ଫସଲ, ଶାଗସବଜିଠାରୁ ଆରମ୍ଭ କରି ଗୃହାଙ୍ଗନର ବିଭିନ୍ନ ପୋକ ନାଶ ପାଇଁ ଭିନ୍ନ ଭିନ୍ନ ଜାତୀୟ ଔଷଧ ବ୍ୟବହାର ଆଜି ଦୈନନ୍ଦିନ ଜୀବନଯାତ୍ରାରେ ଅତି ସାଧାରଣ ବିଷୟ । ପନିପରିବାରେ ଔଷଧ ସଙ୍ଗେସଙ୍ଗେ ପକାଇ ବଜାର ହାଟକୁ ଆଣି ବିକ୍ରୟ କରିବା ସାଧାରଣ ପ୍ରକ୍ରିୟାରେ ପରିଣତ ହୋଇଛି ।

ପରୀକ୍ଷାରୁ ଜଣାଯାଏ ଯେ, ଡି.ଡି.ଟି. ଓ ବି.ଏଚ୍.ସି. ପ୍ରଭୃତି ଫସଲରେ ପକାଇଲେ ତାହା ଫସଲରେ ଅନେକ ଦିନ ପର୍ଯ୍ୟନ୍ତ ରହିଯାଏ । ଏପରିକି ଗାଈଗୋରୁ ତାକୁ ଖାଇଲେ କ୍ଷୀରରେ ମଧ୍ୟ ଏହାର ପ୍ରଭାବ ପରିଲକ୍ଷିତ ହୁଏ । ଖାଦ୍ୟ ମାଧ୍ୟମରେ ଯାଉଥିବା ଏ ପ୍ରକାର ବିଷ ମା' କ୍ଷୀରରେ ମଧ୍ୟ ମିଳୁଥିବାର ପ୍ରମାଣ ମିଳେ । ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ, ଏଭଳି ବିଷଯୁକ୍ତ ଖାଦ୍ୟ କିପରି ଅସଂଖ୍ୟ ମଣିଷ ତଥା ପିଲାମାନଙ୍କର ଦୁରାବସ୍ଥାର କାରଣ ହୋଇଛି ।

ହୋମଦିଗଙ୍କଠାରୁ ସଂଗୃହୀତ କ୍ଷୀରରେ ବି.ଏଚ୍.ସି.ର ପରିମାଣ ୦.୦୦୧ରୁ ୦.୧୩୮୪ ପି.ପି.ଏମ୍. ପର୍ଯ୍ୟନ୍ତ ରହୁଛି । ଯଦିଓ ଏହା ନିରାପଦ ତଥାପି କ୍ରମାଗତ ବ୍ୟବହାର ଦ୍ୱାରା ବିଭିନ୍ନ ରୋଗର ସମ୍ଭାବନା ରହୁଛି । ପନିପରିବାରେ ଔଷଧ ପକାଇ ତାହାର ପ୍ରଭାବ ନଷ୍ଟ ହେବା ପର୍ଯ୍ୟନ୍ତ ଅପେକ୍ଷା ନ କରିବା ଫଳରେ ବଜାର ହାଟରେ ବିକ୍ରୟ ହେଉଥିବା ବହୁ ଜାତୀୟ ବିଷ ଔଷଧ ପଡିଥିବା ପନିପରିବା ମଣିଷକୁ ବିପଦଗ୍ରସ୍ତ କରୁଛି ।

ଓଡିଶା କୃଷି ବୈଷୟିକ ବିଶ୍ୱବିଦ୍ୟାଳୟ ଅନୁକୂଲ୍ୟରେ କୃଷି ରସାୟନ ବିଭାଗରେ କେତେକ ଉପାଦେୟ ପରୀକ୍ଷାରୁ ବିଭିନ୍ନ ପ୍ରକାର ପନିପରିବାରେ ଭିନ୍ନଭିନ୍ନ ଔଷଧ ପ୍ରୟୋଗ କରି ତାର ନିରାପଦ ସମୟ ନିର୍ଦ୍ଧାରିତ ହୋଇଛି । ଏହି ନିରାପଦ ସମୟକୁ ଅପେକ୍ଷା କରି ପନିପରିବା ବ୍ୟବହାର କଲେ ବିପଦମୁକ୍ତ ହୋଇ ହେଉଛି ।

| ଫସଲ | କୀଟନାଶକ ଔଷଧ | ଔଷଧ ପକାଇବା କେତେଦିନ ପରେ ତୋଳିବା |
|---|---|---|
| ବାଇଗଣ | ନ୍ୟୁଭାକ୍ରନ୍ | ୭ ଦିନ |
| | ହିଲ୍ଡାନ୍ | ୮ ଦିନ |
| | ମାଲାଥିଅନ୍ | ୨ ଦିନ |
| ଫୁଲକୋବି | ହିଲ୍ଡାନ୍ | ୧୫ ଦିନ |
| | ମାଲାଥିଅନ୍ | ୫ ଦିନ |
| ବନ୍ଧାକୋବି | ହିଲ୍ଡାନ୍ | ୧୫ ଦିନ |
| | ମାଲାଥିଅନ୍ | ୧୦ ଦିନ |
| ଲଙ୍କା | ସେଭିନ୍ | ୩ ଦିନ |
| | ନ୍ୟୁଭାକ୍ରନ୍ | ୧୬ ଦିନ |
| ବିଲାତି ବାଇଗଣ | ସେଭିନ୍ | ୩ ଦିନ |
| | ନ୍ୟୁଭାକ୍ରନ୍ | ୮ ଦିନ |
| | ଏକାଲକ୍ସ | ୧୫ ଦିନ |
| ବିନ୍ | ଡିମେଥୋଏଟ୍ | ୨ ଦିନ |
| | ନ୍ୟୁଭାକ୍ରନ୍ | ୯ ଦିନ |
| ଧାନ | ଫ୍ୟୁରାଡନ୍ | ୪୦ ଦିନ |

ବଜାରରେ ବିକ୍ରୟ ହେଉଥିବା ପନିପରିବା ପ୍ରତି ସନ୍ଦେହ ଅଛିଲେ ଗୃହିଣୀମାନେ ଖୋସେଇ କରିବା ପୂର୍ବରୁ ଭଲଭାବେ କାଟି ୪ ଲିଟର୍ ପାଣିରେ ୫ ମିନିଟ ପାଇଁ ନିମ୍ନଲିଖିତ ଦ୍ରବଣରୁ ଯେ କୌଣସିଟି ନେଇ ଭିଜାଇ ତାକୁ ଛାଣି ବ୍ୟବହାର କଲେ ପ୍ରାୟ ୬୦ରୁ ୮୦ ଭାଗ ବିଷ ପ୍ରକ୍ରିୟା ନଷ୍ଟ ହୋଇଥାଏ ।

ଭିନେଗାର୍ ୮ ଚାମଚ (୪୦ ସି.ସି.), ହଳଦିଗୁଣ୍ଡ ଦୁଇ ଚାମଚ (୪ ଗ୍ରାମ୍), ଖାଇବା ସୋଡା ୧ ଚାମଚ (୨ ଗ୍ରାମ୍), ଲୁଣ ୨ ଚାମଚ (୮ ଗ୍ରାମ) ଓ ଆଲ୍କୋହଲ୍ ୮ ଚାମଚ (୪୦ ସି.ସି.) ଇତ୍ୟାଦି ।

ଏଥିରୁ ସ୍ପଷ୍ଟ ପ୍ରତୀୟମାନ ହୁଏ ଯେ ଫସଲର ପ୍ରକାର, ଅବସ୍ଥା ଇତ୍ୟାଦିକୁ ବିଚାରକୁ ନେଇ ରାସାୟନିକ ଔଷଧର ପ୍ରକାର ଓ ପରିମାଣ ନିର୍ଦ୍ଧାରଣ ପୂର୍ବକ ତଦନୁପାତିକ ଔଷଧର ଗୁଣ ନଷ୍ଟ ହେବା ପାଇଁ ଯଥେଷ୍ଟ ସମୟ ଛାଡି ଫଳିପରିବା ଇତ୍ୟାଦି ଗ୍ରହଣ କରାଯିବା ଉଚିତ୍ ।

ପ୍ରଧ୍ୟାପକ, କୃଷିରସାୟନ ବିଭାଗ,
କୃଷି ବିଶ୍ୱବିଦ୍ୟାଳୟ,
ଭୁବନେଶ୍ୱର ।

## ପ୍ରଶାସନ ଶବ୍ଦକୋଷ

ପ୍ରଶାସନ ଶବ୍ଦକୋଷକୁ ଅଧିକ ସରଳ ଓ ବୋଧଗମ୍ୟ କରିବା ଲକ୍ଷ୍ୟରେ ରାଜ୍ୟ ସରକାରଙ୍କ ଦ୍ୱାରା ଗଠିତ କମିଟି ଗତ ଡିସେମ୍ବର ମାସରୁ ତାଙ୍କର କାର୍ଯ୍ୟ ଆରମ୍ଭ କରିଛନ୍ତି ।

ଏହି କମିଟିରେ ଡଃ ବଂଶୀଧର ମହାନ୍ତି, ଅଧ୍ୟକ୍ଷ ଏବଂ ଡଃ ବିଦ୍ୟାଧର ପାଢୀ, ଡଃ ବେଣୁଧର ରାଉତ, ଡଃ ଗୋକୁଳାନନ୍ଦ ମହାପାତ୍ର, ଶ୍ରୀ ପ୍ରଫୁଲ୍ଲ କୁମାର ତ୍ରିପାଠୀ ଓ ଶ୍ରୀ ସତ୍ୟେନ୍ଦ୍ର ପ୍ରସନ୍ନ ସିଂହ ସଦସ୍ୟ ଅଛନ୍ତି । ଆଇନ ବିଭାଗର ଅନୁଶାସନ ସଚିବ ଅବ୍ଦୁଲ୍ କଦର୍ ଖାନ୍ କମିଟିର ସେକ୍ରେଟେରୀ ଦାୟିତ୍ୱରେ ଅଛନ୍ତି ।

ସରକାରୀ ଅଫିସ୍‌ମାନଙ୍କରେ ବ୍ୟବହାର ହେଉଥିବା ଇଂରାଜୀ ଶବ୍ଦଗୁଡିକର ସରଳ ଓଡିଆ ଭାଷାନ୍ତର କରି ଶବ୍ଦକୋଷର ପରବର୍ତ୍ତୀ ସଂସ୍କରଣ ପ୍ରକାଶ ପାଇଁ କମିଟି ପକ୍ଷରୁ ଉଦ୍ୟମ କରାଯାଉଛି । କମିଟି ପକ୍ଷରୁ ଏ ସମ୍ପର୍କରେ ମତାମତ ଦେବା ପାଇଁ ବିଭିନ୍ନ ବିଭାଗକୁ ଅନୁରୋଧ କରାଯାଇଛି । ଜନସାଧାରଣଙ୍କ ମଧ୍ୟରୁ ଅଭିଜ୍ଞ ବ୍ୟକ୍ତିମାନେ ସରକାରୀ ଅଫିସ୍‌ମାନଙ୍କରେ ବ୍ୟବହୃତ ହେଉଥିବା ଇଂରାଜୀ ଶବ୍ଦର ବୋଧଗମ୍ୟ ଓଡିଆ ଭାଷାନ୍ତର ବିଷୟରେ କମିଟିକୁ ଜଣାଇବା ପାଇଁ କମିଟିର ସଭାପତି ଡଃ ବଂଶୀଧର ମହାନ୍ତି ଅନୁରୋଧ କରିଛନ୍ତି ।

# ପରିବେଶ ପ୍ରଦୂଷଣ ଓ ପଶୁପକ୍ଷୀ

ଡା: ବାବାଜୀ ଚରଣ ନାୟକ

ଜଳ, ସ୍ଥଳ, ଆକାଶ ଓ ବଣ ଜଙ୍ଗଲ ପ୍ରାଣୀର ପରିବେଶ । ଏହାର ନିର୍ମଳତା ଓ ଶୁଚିତା ଉପରେ ମଣିଷ, ପଶୁପକ୍ଷୀ, ବନ୍ୟଜନ୍ତୁ ଓ ଜଳଚର ଜୀବମାନଙ୍କର ସୁନ୍ଦର ସ୍ୱାସ୍ଥ୍ୟ ନିର୍ଭର କରେ । ସାରା ବିଶ୍ୱରେ ଓ ଆମ ଦେଶରେ ବିଭିନ୍ନ କାରଣ ଯୋଗୁଁ ଯଥା: କଳକାରଖାନାରୁ ନିର୍ଗତ ଧୂଆଁ, ନିର୍ଗତ ଦୂଷିତ ଜଳ ଓ ଆବର୍ଜନାଯୁକ୍ତ ମଳ, ବାଷ୍ପଚାଳିତ ଯାନବାହନମାନଙ୍କରୁ ନିର୍ଗତ ଧୂଆଁ, କୃଷି କ୍ଷେତ୍ରରେ ବ୍ୟବହୃତ ହେଉଥିବା ବିଭିନ୍ନ ରାସାୟନିକ ପଦାର୍ଥ, ଆଣବିକ କେନ୍ଦ୍ରରୁ ତେଜସ୍କ୍ରିୟ ଶକ୍ତିର ବିକିରଣ ଏବଂ ସେହି ଆଣବିକ ଅସ୍ତ୍ରଶସ୍ତ୍ରଗୁଡିକର ବ୍ୟବହାର ଦ୍ୱାରା ବିକିରଣ ହେଉଥିବା ବିଷାକ୍ତ ପଦାର୍ଥ ପରିବେଶ ପ୍ରଦୂଷଣ କରିବାରେ ପ୍ରଧାନ ଭୂମିକା ଗ୍ରହଣ କରିଥାନ୍ତି ଯାହାରକି ଦୃଷ୍ଟାନ୍ତ ବିରଳ ନୁହେଁ । ଏହା ଦ୍ୱାରା ଅସଂଖ୍ୟ ମଣିଷ, ପଶୁପକ୍ଷୀ, ମାଛ ଓ ଅନ୍ୟାନ୍ୟ ଜଳଚର ଜୀବମାନଙ୍କର ମୃତ୍ୟୁ ଘଟିଛି ଓ ଘଟୁଛି ।

ଏହି ପରିବେଶ ପ୍ରଦୂଷଣରେ ପଶୁପକ୍ଷୀମାନଙ୍କର କେତେକ ଅବଦାନ ଅଛି । ଏ ସବୁର କେତେକ ଦୃଷ୍ଟାନ୍ତ ଏଠାରେ ଉଲ୍ଲେଖ କରାଯାଉଛି ।

ଆମ ଦେଶର ଗାଁ ଗଣ୍ଡାରେ ଥିବା ଗାଡିଆ ପୋଖରୀ ଓ ନଈନାଳ ପ୍ରଭୃତିରେ ପଶୁମାନଙ୍କୁ ଗାଧୋଇ ଦେବା ଗୋଟିଏ ଦୈନନ୍ଦିନ କାମ । ଗୋରୁଗାଈମାନେ ଏଥିରେ ଯେଉଁ ମଳମୂତ୍ର ନିର୍ଗତ କରନ୍ତି ତଥା ସେମାନଙ୍କ ଦେହରେ ବିଭିନ୍ନ ପ୍ରକାର ଚର୍ମରୋଗ ଥିବା ସ୍ଥାନରୁ ନିର୍ଗତ ଲୋମ, ପୂଜ, ରକ୍ତ ଓ ଛିଡି ଯାଉଥିବା ଚର୍ମଖଣ୍ଡମାନ ଯେଉଁଭଳି ଭାବରେ ପାଣିକୁ ଦୂଷିତ କରେ ମଣିଷ ସେଥିରୁ ପାଣି ବ୍ୟବହାର କଲେ ସହଜରେ ରୋଗାକ୍ରାନ୍ତ ହୋଇଥାଏ । ଦୃଷ୍ଟାନ୍ତ ସ୍ୱରୂପ, ରାଇନୋ ସ୍ପୋରିଡିଓସିସ୍ (Rhinosporidiosis) ଗୋଟିଏ ଫିମ୍ପିଂଜନିତ ରୋଗ । ଏହା ପଶୁପକ୍ଷୀମାନଙ୍କଠାରୁ ମଣିଷକୁ ବ୍ୟାପେ । ଏହା ଦୂଷିତ ଗାଡିଆ ପୋଖରୀର ଜଳ ବ୍ୟବହାର ଯୋଗୁଁ ହୋଇଥାଏ । ପଶୁମାନଙ୍କ ନାକରେ ଏହି ରୋଗ ହୋଇଥାଏ ଓ କେତେକ ଜଳଚର ପକ୍ଷୀ ମଧ୍ୟ ଏହି ଫିମ୍ପିଂକୁ ନିଜର ଅନ୍ତ୍ରନଳୀରେ ଆଶ୍ରୟ ଦେଇଥାନ୍ତି । ଯେତେବେଳେ ଏହି ରୋଗାକ୍ରାନ୍ତ ପଶୁମାନେ ଗାଡିଆ ପୋଖରୀରେ ସ୍ନାନ କରନ୍ତି ଓ ଜଳଚର ପକ୍ଷୀମାନେ ମଳତ୍ୟାଗ କରନ୍ତି, ତାଙ୍କଠାରୁ ଓ ଜଳଚର ପକ୍ଷୀମାନଙ୍କ ମଳରୁ ଏହି ଫିମ୍ପିଂ ନିର୍ଗତ ହୋଇ ଜଳକୁ ଦୂଷିତ କରେ । ମଣିଷକୁ ପୁଣି ରୋଗାକ୍ରାନ୍ତ କରାଏ ।

ଆମ ଦେଶରେ ଗୋରୁଗାଈ, ଛେଳି, ମେଣ୍ଢା, ଘୋଡା, ଗଧ ଓ କୁକୁର ପ୍ରଭୃତି ପଶୁମାନେ ରାସ୍ତାରେ ବିଚରଣ କରନ୍ତି, ମଳମୂତ୍ର ମଧ୍ୟ ତ୍ୟାଗ କରନ୍ତି । ଏହି ମଳମୂତ୍ରରୁ ନିର୍ଗତ କୃମିମାନଙ୍କ ଅଣ୍ଡା ଓ ଯାଦୁଆ ଗାଈଗୋରୁ ଓ କୁକୁରଙ୍କ ଦେହରୁ ନିର୍ଗତ ଜୀବାଣୁ ଜଳବାୟୁକୁ ଦୂଷିତ କରେ । ମନୁଷ୍ୟ ଓ ପଶୁମାନଙ୍କୁ ରୋଗାକ୍ରାନ୍ତ କରେ । ଧନୁଷ୍ଟଙ୍କାର ରୋଗ ମଧ୍ୟ ଘୋଡାମାନଙ୍କ ମଳରୁ ନିର୍ଗତ ଜୀବାଣୁ ଦ୍ୱାରା ହୋଇଥାଏ ।

ଜଳାତଙ୍କ ଗୋଟିଏ ମାରାତ୍ମକ ରୋଗ ବୋଲି ସମସ୍ତେ ଜାଣନ୍ତି । ଏହାଦ୍ୱାରା ଶହଶହ ଲୋକ, ଗୋ-ମହିଷାଦି ପଶୁ ଓ କୁକୁରମାନେ ମୃତ୍ୟୁମୁଖରେ ପଡୁଛନ୍ତି । ଏ ରୋଗ ପ୍ରଧାନତଃ ପାଗଳା କୁକୁର କାମୁଡିବା ଦ୍ୱାରା ହୋଇଥାଏ । କୁକୁର ଛଡା ଆମ ଦେଶରେ ବିଲୁଆ, ଗଧିଆ, ନେଉଳ ଓ ମାଙ୍କଡମାନଙ୍କ ଦ୍ୱାରା ମଧ୍ୟ ଅନେକ ସମୟରେ ଜଳାତଙ୍କ ରୋଗ ବ୍ୟାପିଥାଏ । ଆକ୍ରାନ୍ତ କୁକୁର କିମ୍ବା ଗୋ-ମହିଷାଦି ପଶୁମାନଙ୍କର ନିର୍ଗତ ଲାଳଗାଡିଆ ପୋଖରୀ ଜଳ ଓ ପଶୁମାନଙ୍କ ନଡା ଘାସ ପ୍ରଭୃତିକୁ ଦୂଷିତ କରି ସୁସ୍ଥ ମନୁଷ୍ୟ ଓ ପଶୁମାନଙ୍କ ଦେହରେ ରୋଗ ଜନ୍ମାଇପାରେ ।

ଆମ ଦେଶରେ ମୃତ ପଶୁପକ୍ଷୀମାନଙ୍କୁ ସାଧାରଣତଃ ରାସ୍ତାକଡରେ ଥିବା ନଳାରେ, ଗାଁମୁଣ୍ଡ ପଡିଆରେ କିମ୍ବା ନଦୀରେ ଫୋପାଡି ଦିଅନ୍ତି । ଏହାଦ୍ୱାରା ପଚାସଢା ଶବମାନଙ୍କଠାରୁ ନିର୍ଗତ ରୋଗକାରକ ଜୀବାଣୁ । ଜଳବାୟୁକୁ ଦୂଷିତ କରି ରୋଗ ସୃଷ୍ଟି କରିଥାଏ । ଏତଦ୍‌ବ୍ୟତୀତ ବିଲୁଆ, କୁକୁର ଓ ଶାଗୁଣା ପ୍ରଭୃତି ପଶୁପକ୍ଷୀମାନେ ମୃତ ପଶୁମାନଙ୍କୁ ଆହାର କରି ଫେରି ଯିବା କିମ୍ବା ଉଡିଯିବା ବାଟରେ ଜଳ ପିଇ କିମ୍ବା ମାଂସଖଣ୍ଡ ପକାଇ ଦୂଷ

ପୋଖରୀର ପାଣିକୁ ଦୂଷିତ କରିଥାନ୍ତି । ଆନ୍ଥ୍ରାକ୍ସ (ପଟାସ୍ଫୁଲା) ବୋଲି ପଶୁମାନଙ୍କର ଗୋଟିଏ ରୋଗର ଜୀବାଣୁ ମଣିଷମାନଙ୍କ ଦେହର ସଂସ୍ପର୍ଶରେ ଆସି ବିଷବ୍ରଣ ବୋଲି ଗୋଟିଏ ରୋଗ ଜନ୍ମାଇଥାନ୍ତି । ମେଣ୍ଢା ଫାର୍ମରେ ଏହି ପଟାସ୍ଫୁଲା ରୋଗ ହେଲେ ଫାର୍ମରେ କାର୍ଯ୍ୟ କରୁଥିବା ଲୋକମାନଙ୍କର ନିଶ୍ୱାସପ୍ରଶ୍ୱାସରେ ଏହି ଜୀବାଣୁ ମଣିଷ ଦେହ ଭିତରକୁ ପ୍ରବେଶ କରି ବିଷବ୍ରଣ ରୋଗ କରିଥାଏ ।

ବିଶ୍ୱ ସ୍ୱାସ୍ଥ୍ୟ ସଂସ୍ଥାର ଏକ ରିପୋର୍ଟରୁ ଜଣାପାଇଛି ଯେ ପରିବେଶ ପ୍ରଦୂଷଣ ଦ୍ୱାରା ଗାଈମାନଙ୍କର କ୍ଷୀର ପ୍ରଦୂଷିତ ହେଉଛି ଓ ତାହାକୁ ବ୍ୟବହାର କରି ମନୁଷ୍ୟ ମଧ୍ୟ ରୋଗାକ୍ରାନ୍ତ ହେଉଛି ।

ମସ୍ତିଷ୍କଜ୍ୱର ମନୁଷ୍ୟମାନଙ୍କ ମଧ୍ୟରେ ଆଜିକାଲି ବିଶେଷ ବ୍ୟାପିବାର ଦେଖାଯାଉଛି ଓ ବହୁତ ବ୍ୟକ୍ତି ମୃତ୍ୟୁ ମୁଖରେ ପଡୁଛନ୍ତି । ଏହା ଗୋଟିଏ ଭୂତାଣୁ ଦ୍ୱାରା ହୁଏ ଏବଂ ଘୁଷୁରୀ ଓ କେତେକ ବଗଜାତୀୟ ପକ୍ଷୀମାନେ ପରିବେଶକୁ ପ୍ରଦୂଷିତ କରି ରୋଗ ସୃଷ୍ଟି କରନ୍ତି । ରୋଗାକ୍ରାନ୍ତ ଘୁଷୁରୀମାନଙ୍କୁ ମାରି ମାଂସକୁ ଖାଦ୍ୟ ରୂପେ ବ୍ୟବହାର କରିବା ଦ୍ୱାରା ଘୁଷୁରୀରକ୍ଷକମାନେ କିମ୍ବା କଂସେଇମାନେ ପରିବେଶକୁ କେତେକ ସ୍ଥାନରେ ପ୍ରଦୂଷିତ କରିଥାନ୍ତି । ଏହାଦ୍ୱାରା ମସ୍ତିଷ୍କ ଜ୍ୱର ବ୍ୟାପିଥାଏ ।

ଏହି ସବୁ ପ୍ରଦୂଷଣରୁ ରକ୍ଷା ପାଇବା ପାଇଁ ଜନସାଧାରଣ ଓ ସରକାରଙ୍କର ଗୁରୁ ଦାୟିତ୍ୱ ରହିଛି । ତେଣୁ ଗୋ-ମହିଷାଦି ଓ କୁକୁର ପ୍ରଭୃତି ପଶୁମାନଙ୍କର ଉପଯୁକ୍ତ ଯତ୍ନ ନେବା ଉଚିତ । ରାସ୍ତାରେ ପଶୁମାନଙ୍କୁ ଅବାଧରେ ବୁଲାବୁଲି କରିବାକୁ ଦେବା ଉଚିତ ନୁହେଁ । ସହର ବଜାର ପରିସର ମଧ୍ୟରେ ଗୋରୁଗାଈମାନଙ୍କ ପାଇଁ ଗୁହାଳଘର କରି ରାସ୍ତାକଡରେ କିମ୍ବା ଖୋଲା ଜାଗାରେ ମଳମୂତ୍ର ଗଦା କରି ପରିବେଶକୁ ପ୍ରଦୂଷିତ କରିବା ଉଚିତ ନୁହେଁ । ମ୍ୟୁନିସିପାଲିଟି କର୍ତ୍ତୃପକ୍ଷ ବୁଲା କୁକୁରମାନଙ୍କୁ ନିୟମିତ ଭାବରେ ମାରିବା ଉଚିତ । ପୋଷା କୁକୁରମାନଙ୍କୁ ଲାଇସେନ୍ସ କରି ନିୟମିତ ଜଳାତଙ୍କ ପ୍ରତିଷେଧକ ଟିକା ଦେବା ଉଚିତ । ପଶୁମାନଙ୍କ ପାଇଁ ବ୍ୟବହୃତ ଗଡିଆ ପୋଖରୀର ପାଣି ମନୁଷ୍ୟମାନଙ୍କ ବ୍ୟବହାରରେ ନ ଲାଗିବା ଉଚିତ । ମଲା ଗୋରୁ ଓ କୁକୁରମାନଙ୍କୁ ନଦୀ ନାଳରେ କିମ୍ବା ମଶାଣିରେ ଫୋପାଡି ନ ଦେଇ ପୋତି ଦେବା ଉଚିତ । ମ୍ୟୁନିସିପାଲିଟି କର୍ତ୍ତୃପକ୍ଷ ଏହାର ସୁବ୍ୟବସ୍ଥା କରିବା ଉଚିତ । ମସ୍ତିଷ୍କ ଜ୍ୱର ଭୂତାଣୁ ଦ୍ୱାରା ଆକ୍ରାନ୍ତ ଘୁଷୁରୀମାନଙ୍କୁ ପଶୁ ଚିକିତ୍ସକମାନଙ୍କ ତତ୍ତ୍ୱାବଧାନରେ ସୁପରିଚାଳିତ କଂସାଇଖାନାରେ ମାରି ନଷ୍ଟ କରି ଦେବା ସଙ୍ଗେସଙ୍ଗେ ସେ ସ୍ଥାନକୁ ପରିଷ୍କାର ପରିଚ୍ଛନ୍ନ ରଖିବା ଉଚିତ । ସର୍ବଶେଷରେ ଉପରୋକ୍ତ ରୋଗ ଓ ସେଗୁଡିକର ନିରାକରଣ ବିଷୟରେ ଜନସାଧାରଣଙ୍କୁ ରେଡିଓ ଓ ଦୂରଦର୍ଶନ ମାଧ୍ୟମରେ ଶିକ୍ଷା ଦେବା ବିଧେୟ ।

---

ମୁଖ୍ୟ ଅଧ୍ୟାପକ, ନିଦାନ ବିଭାଗ,
ଭେଟେରିନାରୀ କଲେଜ,
ଭୁବନେଶ୍ୱର–୮

## ଛାତ୍ରବୃତ୍ତି ପ୍ରଦାନ

ଚୂନପଥର ଓ ଡୋଲମାଇଟ୍ ଖଣି ଶ୍ରମିକ କଲ୍ୟାଣ ପାଣ୍ଠିର ୧୯ତମ ବୈଠକ ଗତ ଜାନୁଆରୀ ୬ ତାରିଖ ଦିନ ପୁରୀ 'ହଲିଡେ ହୋମ୍'ଠାରେ ରାଜ୍ୟ ଗୃହ ନିର୍ମାଣ, ଶ୍ରମ ଓ ନିୟୋଜନ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଗଜାଧର ମାଝୀଙ୍କ ଅଧ୍ୟକ୍ଷତାରେ ଅନୁଷ୍ଠିତ ହୋଇଥିଲା । ବୈଠକରେ ୧୯୮୯–୯୦ ମସିହା ପାଇଁ ଚୂନପଥର ଓ ଡୋଲମାଇଟ୍ ଖଣି ଶ୍ରମିକଙ୍କ ସନ୍ତାନସନ୍ତତିମାନଙ୍କ ମଧ୍ୟରୁ ୧୮୧ ଜଣଙ୍କୁ ଛାତ୍ରବୃତ୍ତି ପ୍ରଦାନ କରିବାକୁ ଅନୁମୋଦନ କରାଗଲା ଏବଂ ଅନ୍ୟ ସମସ୍ତ ଆବେଦନକାରୀ ଛାତ୍ରଛାତ୍ରୀମାନଙ୍କୁ ବୃତ୍ତି ଦେବା ପାଇଁ ସରକାର ସୁପାରିଶ କରିଥିଲେ । ପ୍ରାଥମିକ ବିଦ୍ୟାଳୟରେ ପଢୁଥିବା ଚୂନପଥର ଓ ଡୋଲମାଇଟ୍ ଖଣି ଶ୍ରମିକଙ୍କ ସନ୍ତାନସନ୍ତତିଙ୍କୁ ଯୋଜନାଭୁକ୍ତ ନିର୍ଦ୍ଧାରିତ ହାରରେ ପାଠ୍ୟୋପକରଣ ଯୋଗାଇ ଦେବା ପାଇଁ ମଧ୍ୟ ବୈଠକରେ ନିଷ୍ପତ୍ତି ଗ୍ରହଣ କରାଗଲା ।

# କୃଷି କ୍ଷେତ୍ରରେ ଶକ୍ତି ସଂରକ୍ଷଣ

ଶ୍ରୀ ସୁବାସ ଚନ୍ଦ୍ର ସାହୁ

ଏକବିଂଶ ଶତାବ୍ଦୀର ଶକ୍ତି ସମସ୍ୟା ଆଜ ଠୁଁ ଆମ ସମସ୍ତଙ୍କ ପାଇଁ ମୁଣ୍ଡ ବ୍ୟଥାର କାରଣ ହେଲାଣି । ଅବଶ୍ୟ ପଦାର୍ଥ ବିଜ୍ଞାନର ନିୟମ ଅନୁସାରେ ଶକ୍ତି କେବେ ସୃଷ୍ଟି ହୁଏ ନାହିଁ କିମ୍ବା ନଷ୍ଟ ହୁଏ ନାହିଁ । ଏହା କେବଳ ଗୋଟିଏ ରୂପରୁ ଅନ୍ୟ ରୂପକୁ ରୂପାନ୍ତରିତ ହୋଇଥାଏ । ତଥାପି ଆମେ ଯେଉଁ ସବୁ ଉତ୍ସରୁ ଶକ୍ତି ପାଉଥାଉ ସେ ସବୁ ଉତ୍ସ ଆସ୍ତେ ଆସ୍ତେ ସରି ଆସୁଥିବାରୁ ଭବିଷ୍ୟତରେ ଶକ୍ତି ପାଇବା ଏକ ସମସ୍ୟାରେ ପରିଣତ ହେବ ଏଥିରେ ସନ୍ଦେହ ନାହିଁ ।

ଶକ୍ତିର ଅନ୍ୟାନ୍ୟ ଉତ୍ସମାନଙ୍କ ମଧ୍ୟରେ କୋଇଲା ଏବଂ ପେଟ୍ରୋଲିୟମ୍ ମୁଖ୍ୟ ସ୍ଥାନ ଅଧିକାର କରିଛି । ବର୍ତ୍ତମାନ ପରିପ୍ରେକ୍ଷୀରେ ଏ ଦୁଇଟିର ଚାହିଦା ଯେମିତି ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଛି ଆଉ ଅଧିକ ଦିନ ଆମେ ଶକ୍ତି ପାଇବା ପାଇଁ କୋଇଲା ଓ ପେଟ୍ରୋଲ ଉପରେ ନିର୍ଭର କରିପାରିବା ନାହିଁ । ଏ କଥା କାହାକୁ ଅଛପା ନଥିବ ଯେ ଖଣି ଭିତରେ କୋଇଲା ଏବଂ ଖଣିଜ ତୈଳର ପରିମାଣ ସୀମିତ । କେତେକ ବୈଜ୍ଞାନିକଙ୍କ ମତରେ ବର୍ତ୍ତମାନ ପରି ପେଟ୍ରୋଲର ବ୍ୟବହାର ବୃଦ୍ଧି ପାଇଲେ ଆଗାମୀ ୨୦୨୦ ଖ୍ରୀଷ୍ଟାବ୍ଦ ସୁଦ୍ଧା ପୃଥିବୀରୁ ସବୁ ପେଟ୍ରୋଲିୟମ୍ ଶେଷ ହେବ । ତେଣୁ ସେତେବେଳେ ଶକ୍ତି ସମସ୍ୟା ସମାଧାନ କରିବା ଆମ କର୍ତ୍ତୃତ୍ୱର ବାହାରକୁ ଖସିଯିବ ।

ଭାରତରେ ଯଥେଷ୍ଟ ସଂଖ୍ୟକ ପେଟ୍ରୋଲିୟମ୍ ଖଣି ନଥିବାରୁ ଏ ସମସ୍ୟା ଆମ ପାଇଁ ଅଧିକ ଉତ୍କଟ ହୋଇ ଦେଖାଦେବ । ସେଥିପାଇଁ ଆମକୁ ଆଜିଠୁ ସତର୍କତା ଅବଲମ୍ବନ କରିବାକୁ ପଡ଼ିବ । ଅବଶ୍ୟ ଆଜିକାଲି ଅଣପାରମ୍ପରିକ କ୍ଷେତ୍ରରୁ ଶକ୍ତି ସଂଗ୍ରହ କରିବା ଉପରେ ଗୁରୁତ୍ୱ ଆରୋପ କରାଯାଉଛି । ସୌର ଶକ୍ତି, ସମୁଦ୍ର ଲହଡ଼ି, ପବନ ଆଦିରୁ ଶକ୍ତି ସଂଗ୍ରହ କରି ନିଜ ବ୍ୟବହାରରେ ଲଗାଇବା ପାଇଁ ଚେଷ୍ଟା କରାଗଲାଣି । ତଥାପି ଶକ୍ତି ସମସ୍ୟାକୁ ଏଡ଼େଇଯିବା ପାଇଁ ଆମେ ଆଜିଠୁ ଶକ୍ତି ସଂରକ୍ଷଣ ବିଷୟରେ ସଚେତନ ହେବା ଉଚିତ ।

ଆମର ଦୈନନ୍ଦିନ ଜୀବନରେ ବ୍ୟବହାର କରାଯାଉଥିବା ଶକ୍ତିକୁ ନଷ୍ଟ ହେବାକୁ ନଦେଇ କିପରି ଠିକ୍ ଭାବେ ବିନିଯୋଗ କରାଯାଇ ପାରିବ ଓ ଏଥିରୁ ସର୍ବାଧିକ ଲାଭ ମିଳିପାରିବ ସେ ବିଷୟରେ ସମସ୍ତେ ଚିନ୍ତା କରିବା ଦରକାର । କଳ କାରଖାନା, ମୋଟର ଗାଡ଼ି ଏପରିକି ଘରୋଇ ବ୍ୟବହାର ବେଳେ ଶକ୍ତିର ଉପଯୁକ୍ତ ବିନିଯୋଗ କରିବା ପାଇଁ ଆହ୍ୱାନ ଦିଆଯାଉଛି । କିନ୍ତୁ କୃଷି କ୍ଷେତ୍ରରେ ମଧ୍ୟ ଶକ୍ତି ସଂରକ୍ଷଣର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି ଏ କଥା ଭୁଲିଗଲେ ଚଳିବ ନାହିଁ ।

ଭାରତରେ ବ୍ୟବହାର କରାଯାଉଥିବା ସମସ୍ତ ଶକ୍ତିର ପ୍ରାୟ ଶତକଡ଼ା ୧୧ ଭାଗ କୃଷି କ୍ଷେତ୍ରରେ ବ୍ୟବହୃତ ହୋଇଥାଏ । କୃଷି ଯନ୍ତ୍ରପାତିର ବହୁଳ ବ୍ୟବହାର, ରାସାୟନିକ ସାର ଓ କୀଟନାଶକ ଔଷଧର ଉତ୍ପାଦନ ବୃଦ୍ଧି ଘଟୁଥିବା ଯୋଗୁଁ କୃଷି କ୍ଷେତ୍ରରେ ଶକ୍ତିର ଚାହିଦା ଦିନକୁ ଦିନ ବୃଦ୍ଧି ପାଇବାରେ ଲାଗିଛି । ଏକ ହିସାବରୁ ଜଣାଯାଏ ଯେ ପ୍ରତି ଛଅ ବର୍ଷରେ କୃଷି କ୍ଷେତ୍ରରେ ଶକ୍ତି ଚାହିଦା ଦ୍ୱିଗୁଣିତ ହୋଇଥାଏ । ସେଥିପାଇଁ ଆଗାମୀ ଦିନରେ ଶକ୍ତି ବିନିଯୋଗ କ୍ଷେତ୍ରରେ କୃଷି ଯେ ଏକ ଗୁରୁତ୍ୱପୂର୍ଣ୍ଣ ସ୍ଥାନ ଅଧିକାର କରିବ ଏଥିରେ ସନ୍ଦେହ ନାହିଁ । ତେଣୁ ଆଜିଠୁ ଆମେ କୃଷି କ୍ଷେତ୍ରରେ ଶକ୍ତି ସଂରକ୍ଷଣ ପାଇଁ ବିହିତ ପଦକ୍ଷେପ ଗ୍ରହଣ କରିବା ଉଚିତ ।

କୃଷି କ୍ଷେତ୍ରରେ ବହୁଳ ଭାବେ ବ୍ୟବହୃତ ହେଉଥିବା ରାସାୟନିକ ସାର ଉତ୍ପାଦନ ପାଇଁ ଯଥେଷ୍ଟ ଶକ୍ତି ଆବଶ୍ୟକ ହୋଇଥାଏ । ସମଗ୍ର ପୃଥିବୀରେ ଏହି ପରିମାଣ ଏତେ ବେଶୀ ଯେ ତାହା ଦଶ ହଜାର ନିୟୁତ ଲିଟର ପେଟ୍ରୋଲିୟମରୁ ଉତ୍ପନ୍ନ ଶକ୍ତି ସହ ସମାନ । ତେଣୁ ଜମିରେ କେଜିଏ ସାର ପ୍ରୟୋଗ କରିବା ଅର୍ଥ ମୋଟାଏ ଶକ୍ତି ପ୍ରୟୋଗ କରିବା । ଠିକ୍ ଭାବେ ସାର ପ୍ରୟୋଗ କରି ନପାରିବା ଯୋଗୁଁ ହେଉ ବା କୃଷି କର୍ମରେ ବ୍ୟତିକ୍ରମ ଘଟିବା ଯୋଗୁଁ ଯଦି ପ୍ରୟୋଗ କରାଯାଇଥିବା ରାସାୟନିକ ସାରରୁ ଉପଯୁକ୍ତ ଫଳ ମିଳି ନପାରିଲା ତେବେ ଆମେ ଅଯଥାରେ ଅନେକ ଶକ୍ତି ନଷ୍ଟ କଲେ ବୋଲି ବୁଝିବାକୁ ହେବ । ତେଣୁ ସବୁବେଳେ ଯେତେଦୂର ସମ୍ଭବ କମ୍ ପରିମାଣର ରାସାୟନିକ ସାର ଜମିରେ ପ୍ରୟୋଗ କରିବା ଉଚିତ ।

କେତେକ ବୈଜ୍ଞାନିକ ପରାମର୍ଶ ଦିଅନ୍ତି, ନିହାତି ଦରକାର ନହେଲେ ଜମିରେ ରାସାୟନିକ ସାର ପ୍ରୟୋଗ କରିବା ଉଚିତ ନୁହେଁ । କୃଷ୍ଣ ବହୁଳ ଅଞ୍ଚଳରେ ଆବଶ୍ୟକ କରୁଥିବା ଯବକ୍ଷାର ଜାତୀୟ ସାରକୁ ଅଜୋଲା, ନୀଳହରିତ ଶୈବାଳ ବା ଧଣିଚା ଆଦି ସବୁଜ ସାର ସୃଷ୍ଟି କରି ମାଟିକୁ ଯୋଗାଇ ଦେବା ଆବଶ୍ୟକ । ଯେଉଁଠି ସାର ପ୍ରୟୋଗ କରିବା ନିହାତି ଦରକାର ସେଠାରେ ଠିକ୍ ସମୟରେ ଉପଯୁକ୍ତ ପରିମାଣର ସାର ବ୍ୟବହାର କରିବା ଉଚିତ । ଗଛ ମୂଳରେ ସାର ପ୍ରୟୋଗ କଲେ ଏହା

ମାଟିରେ ନଷ୍ଟ ନହୋଇ ଗଛ ଦ୍ୱାରା ସମ୍ପୂର୍ଣ୍ଣ ଭାବେ ବିନିଯୋଗ ହୋଇ ପାରିବ । ଏ ସବୁ କରିବା ଦ୍ୱାରା ସାର ଉତ୍ପାଦନ ପାଇଁ ଆବଶ୍ୟକ ହେଉଥିବା ଅନେକ ପରିମାଣର ଶକ୍ତି ସଞ୍ଚୟ କରାଯାଇ ପାରିବ ।

ରାସାୟନିକ ସାର ପରି କୀଟନାଶକ ଔଷଧ ଓ ଘାସ ମାରିବା ପାଇଁ ବ୍ୟବହାର କରାଯାଉଥିବା ରାସାୟନିକ ପଦାର୍ଥ ଉତ୍ପାଦନ ବେଳେ ଯଥେଷ୍ଟ ପରିମାଣର ଶକ୍ତି ଆବଶ୍ୟକ ହୋଇଥାଏ । ଅଧିକାଂଶ କୀଟନାଶକ ଔଷଧ ପ୍ରସ୍ତୁତ କରିବା ପାଇଁ ପେଟ୍ରୋଲ ଜାତୀୟ ପଦାର୍ଥ ଆବଶ୍ୟକ ହୋଇଥାଏ । ଏକ କିଲୋଗ୍ରାମ୍ ରାସାୟନିକ ଔଷଧ ପ୍ରସ୍ତୁତ କରିବା ପାଇଁ ଆନୁମାନିକ ୧୦୧ ନିୟୁତ ଜୁଲ୍ ଶକ୍ତି ଆବଶ୍ୟକ ହୋଇଥାଏ । ଯାହାକି ୨ ଦଶମିକ ୪ କିଲୋଗ୍ରାମ୍ ପେଟ୍ରୋଲିଅମ୍‌ରୁ ମିଳୁଥିବା ଶକ୍ତି ସହ ସମାନ ।

ତେଣୁ ଶକ୍ତି ସଂରକ୍ଷଣ ପାଇଁ ଆମେ ରୋଗ ପୋକ ତଥା ଘାସ ଦମନକାରୀ ଔଷଧର ବ୍ୟବହାର ଯେତେଦୂର ସମ୍ଭବ କମାଇ ଦେବା ଉଚିତ । ପୋକ ଦମନ କରିବା ପାଇଁ ଆଜିକାଲି ଅନେକ ପ୍ରକାରର ଜୈବିକ ଉପାୟମାନ ଆବିଷ୍କାର କରାଗଲାଣି । ଗୋଟିଏ ଅନିଷ୍ଟକାରୀ ପୋକକୁ ମାରିବା ପାଇଁ ଅନ୍ୟ ପୋକମାନଙ୍କର ସାହାଯ୍ୟ ନିଆଯାଉଛି । ସେହିପରି ଠିକ୍ ଭାବରେ ଚାଷବାସ କଲେ ଜମିରେ ଅଧିକ ଘାସ ହେବ ନାହିଁ । ଫଳରେ ଏଥିପାଇଁ ଦରକାର ହେଉଥିବା ଔଷଧର ବ୍ୟବହାର ମଧ୍ୟ ହ୍ରାସ ପାଇବ । ଏତଦ୍‌ଭିନ୍ନ କୃଷି କ୍ଷେତ୍ରରେ ରାସାୟନିକ ସାର ଓ ଔଷଧର ବ୍ୟବହାର କମାଇଦେଲେ ପରିବେଶ ଉପରେ ପଡୁଥିବା କୁପ୍ରଭାବକୁ ମଧ୍ୟ ରୋକାଯାଇ ପାରିବ ।

ଟ୍ରାକ୍ଟର୍, ପାୱାର୍ ଟିଲର୍, ପାଣିପମ୍ପ ଆଦି କେତେକ କୃଷି ଯନ୍ତ୍ରପାତି ଚଳାଇବା ପାଇଁ ପେଟ୍ରୋଲ ବା ଡିଜେଲକୁ ଶକ୍ତିର ଉତ୍ସ ଭାବେ ବ୍ୟବହାର କରାଯାଇଥାଏ । ଏ ସବୁ ଯନ୍ତ୍ରପାତିଗୁଡ଼ିକର ଉପଯୁକ୍ତ ଯତ୍ନ ନେଇ ବ୍ୟବହାର କଲେ ଅଳ୍ପ ଶକ୍ତି ବ୍ୟୟରେ ଅଧିକ ଲାଭ ମିଳିଥାଏ । ବିଶେଷକରି ପୁରୁଣାକାଳିଆ ଯନ୍ତ୍ରପାତି ବଦଳରେ ନୂଆ ଡିଜାଇନ୍‌ର ଯନ୍ତ୍ରପାତି ବ୍ୟବହାର କଲେ ଶକ୍ତି ବ୍ୟୟ ହ୍ରାସ ପାଏ । ଇଞ୍ଜିନ୍‌ର ବିଭିନ୍ନ ଅଂଶ ଉପଯୁକ୍ତ ଭାବେ ନିର୍ମାଣ କରାଯାଇଥିଲେ ଚାଲିବା ପାଇଁ ଅଳ୍ପ ଶକ୍ତି ଆବଶ୍ୟକ ହୋଇଥାଏ । ସେହିପରି ଚଳାଇଲା ବେଳେ ଯନ୍ତ୍ରର ଗତି ବେଗ ଓ ଏହା ଉପରେ ପ୍ରୟୋଗ କରାଯାଉଥିବା ଚାପ ଠିକ୍ ରଖିଲେ ଅଳ୍ପ ଶକ୍ତିରୁ ଅଧିକ ଫଳ ମିଳିଥାଏ ।

ଆଜିକାଲି ଜମିରେ ଆଦୌ ହଳ ନକରି ଫସଲ କରିବା ଉପରେ ଗୁରୁତ୍ୱ ଆରୋପ କରାଗଲାଣି । ଏହା ହେଲେ କୃଷି କ୍ଷେତ୍ରରେ ଶକ୍ତିର ଚାହିଦା ଯଥେଷ୍ଟ କମିଯିବ । ସେହିପରି ଧାଡ଼ିରେ ବୁଣାଯାଉଥିବା ଫସଲ କିଆରୀରେ ମଧ୍ୟ ଅଳ୍ପ ଶକ୍ତି ଆବଶ୍ୟକ ହୋଇଥାଏ । ଟ୍ରାକ୍ଟର୍‌ର ଉପଯୁକ୍ତ ଯତ୍ନ ନେଇ ସତର୍କତାର ସହିତ ଚଳାଇଲେ ପେଟ୍ରୋଲିଅମ୍ ଚାହିଦା ଶତକଡ଼ା ୨୦ରୁ ୩୦ ଭାଗ ପର୍ଯ୍ୟନ୍ତ କମିଯାଇ ପାରିବ ।

ଅନେକ ସମୟରେ କେତେକ ଅସାବଧାନତା ଯୋଗୁଁ ଟ୍ରାକ୍ଟରରୁ ଡିଜେଲ୍ ବାହାରି ନଷ୍ଟ ହୋଇଥାଏ । ଏହି ପ୍ରକ୍ରିୟାରେ ଗୋଟିଏ ଟ୍ରାକ୍ଟର୍‌ରୁ ବର୍ଷକୁ ପ୍ରାୟ ୬୦୦ ଲିଟର୍ ଡିଜେଲ୍ ନଷ୍ଟ ହୁଏ । ତେଣୁ ଆମ ଦେଶରେ ଥିବା ୪ ଲକ୍ଷ ଟ୍ରାକ୍ଟର୍‌ରୁ ବର୍ଷକୁ ୨୪ କୋଟି ଲିଟର୍ ଡିଜେଲ୍ ନଷ୍ଟ ହୁଏ । ସାମାନ୍ୟ ସତର୍କତା ଅବଲମ୍ବନ କଲେ ଆମେ ଏତିକି ପରିମାଣର ଡିଜେଲ୍‌ର ଉପଯୁକ୍ତ ବିନିଯୋଗ କରିପାରିବା । ଅନେକ ସମୟରେ କେତେକ ଲୋକ ଟ୍ରାକ୍ଟର୍‌କୁ ଷ୍ଟାର୍ଟ ଅବସ୍ଥାରେ ରଖି ଗପ କରନ୍ତି ବା ଅନ୍ୟଆଡ଼େ ଚାଲିଯାଆନ୍ତି । ଏଥିପାଇଁ ମଧ୍ୟ ଅନେକ ପରିମାଣର ଡିଜେଲ୍ ନଷ୍ଟ ହୋଇଥାଏ ।

କୂଅ, ପୋଖରୀ ଆଦିରୁ ପମ୍ପ ଦ୍ୱାରା ପାଣି ଉଠାଇଲା ବେଳେ ମଧ୍ୟ ଆମର ଅସାବଧାନତା ଯୋଗୁଁ ଅନେକ ଶକ୍ତି ନଷ୍ଟ ହୋଇଥାଏ । ପାଇପ୍‌ର ଲମ୍ବ ଠିକ୍ ନଥିଲେ, ପମ୍ପସେଟ୍ ଠିକ୍ କାମ କରୁନଥିଲେ ପମ୍ପରୁ ଉପଯୁକ୍ତ ଫଳ ମିଳେ ନାହିଁ । ସିମେଣ୍ଟ ନାଳ ତୁଳନାରେ ମାଟି ନାଳରେ ଅଧିକ ପାଣି ନଷ୍ଟ ହେଉଥିବାରୁ ବିନିଯୋଗ କରାଯାଉଥିବା ଶକ୍ତିରୁ ଉପଯୁକ୍ତ ଫଳ ମିଳେ ନାହିଁ ।

ସିଞ୍ଚନ ପ୍ରଣାଳୀରେ ଜଳସେଚନ କଲେ ଶତକଡ଼ା ୫୦ ଭାଗ କମ୍ ଜଳ ଆବଶ୍ୟକ ହୋଇଥାଏ । ଫଳରେ ପାଣି ମଡ଼ାଇବା ପାଇଁ ଅଧିକ ଶକ୍ତି ଦରକାର ହୁଏ ନାହିଁ । ସେହିପରି ଜଳସେଚନ ବେଳେ ପ୍ରବାହିତ ଜଳକୁ ନଷ୍ଟ ହେବାକୁ ନଦେଇ ଉପଯୁକ୍ତ ଭାବେ ବିନିଯୋଗ କରାଯାଇ ପାରିଲେ ଏଥିପାଇଁ ଆବଶ୍ୟକ ହେଉଥିବା ଶକ୍ତିରୁ ଉପଯୁକ୍ତ ସୁଫଳ ମିଳି ପାରିବ ।

କୃଷି କ୍ଷେତ୍ରରୁ ମିଳୁଥିବା ଉଦବାନ୍ତ ପଦାର୍ଥକୁ ମଧ୍ୟ ଶକ୍ତି ଉତ୍ପାଦନ ପାଇଁ ବ୍ୟବହାର କରାଯାଇ ପାରିବ । ଏକ ହିସାବରୁ ଜଣାଯାଏ, ଏକ ଟନ୍ ଶୁଖିଲା ଜୈବିକ ଖତରୁ ଯେତେ ଶକ୍ତି ମିଳିପାରିବ ତାହା ୧ ଦଶମିକ ୩ ବ୍ୟାରେଲ୍ ଖଣିଜ ତୈଳରୁ ମିଳୁଥିବା ଶକ୍ତି ସହ ସମାନ । କୃଷି କ୍ଷେତ୍ରରୁ ମିଳୁଥିବା ଅଦରକାରୀ ପଦାର୍ଥକୁ ଶକ୍ତି ଉତ୍ପାଦନ ପାଇଁ ବ୍ୟବହାର କଲେ କୋଟି କୋଟି ବ୍ୟାରେଲ୍ ପେଟ୍ରୋଲିଅମ୍ ସଞ୍ଚୟ କରାଯାଇ ପାରିବ । ଏବେ ଅଦରକାରୀ ବସ୍ତୁ ଯଥା—ଗୋବର, ନଡ଼ା ଓ ବିଲାତି ଦଳ ଆଦିରୁ ଶକ୍ତି ଉତ୍ପାଦନ କରି ବ୍ୟବହାର କରାଗଲାଣି । ଗୋବର ଗ୍ୟାସ୍ ପ୍ଲାଣ୍ଟ ବସାଇ ଘରେ ବତୀ ଜଳାଇବାଠାରୁ ରୋଷେଇ ପର୍ଯ୍ୟନ୍ତ ସବୁ କାମ କରାଯାଇ ପାରୁଛି । ବିଲାତି ଦଳରୁ ବିଜୁଳି ଶକ୍ତି ବାହାର କରାଯାଇ ପାରିବ ବୋଲି କେତେକ ବୈଜ୍ଞାନିକ ମତ ଦିଅନ୍ତି ।

ଏ ସବୁ ସତ୍ତ୍ୱେ ବର୍ତ୍ତମାନ ପରିପ୍ରେକ୍ଷୀରେ କୃଷି କ୍ଷେତ୍ରରେ ଶକ୍ତି ସଂରକ୍ଷଣ କଥା ଶୁଣି ଆମକୁ ଅଡୁଆ ଲାଗିପାରେ । କିନ୍ତୁ ଆଗାମୀ ଦିନରେ ଏହା ଉଭୟ ଉନ୍ନତ ଓ ପ୍ରଗତିଶୀଳ ଦେଶମାନଙ୍କରେ ଏକ ଗୁରୁତ୍ୱପୂର୍ଣ୍ଣ ବିଷୟ ହୋଇ ପଡ଼ିବ । ସେଥିଲାଗି ଏ ଦିଗରେ ଆମକୁ ବେଳହୁଁ ସାବଧାନ ହେବାକୁ ପଡ଼ିବ ।

---

ଦୂର ଶିକ୍ଷା କାର୍ଯ୍ୟକ୍ରମ,
ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟ,
ଭୁବନେଶ୍ୱର ।

# କୃଷିର ଉନ୍ନତି ହେବକିରେ ଭାଇ......

ଶ୍ରୀ ରଘୁନାଥ ଦାସ

ଭାରତର ଶତକଡ଼ା ୮୦ ଭାଗ ଲୋକ ଗ୍ରାମାଞ୍ଚଳମାନଙ୍କରେ ରହନ୍ତି, ତେଣୁ ସ୍ୱାଧୀନତା ପୂର୍ବରୁ ଏ ପର୍ଯ୍ୟନ୍ତ ଆମର ଧ୍ୱନୀ ରହି ଆସିଛି "ଗ୍ରାମର ଉନ୍ନତିରେ ଦେଶର ଉନ୍ନତି ।" ଏବେ ସ୍ୱାଧୀନତା ମିଳିବାର ୪୨ ବର୍ଷ ବିତିଗଲାଣି । ମାତ୍ର ଗ୍ରାମର ଉନ୍ନତି ଆଶାନୁରୂପେ ହୋଇପାରୁ ନାହିଁ । ଆଦିବାସୀ, ହରିଜନ ଓ ଭୂମିହୀନ ଶ୍ରମିକଙ୍କ ଅବସ୍ଥା କହିଲେ ନସରେ । ସେମାନଙ୍କ ମଧ୍ୟରେ ଶତକଡ଼ା ୮୫ ଭାଗ ନିରକ୍ଷର ରହିଛନ୍ତି । ଦୁଇ ଓଳି ଖାଇବାକୁ ନାହିଁ । ଶତକଡ଼ା ୨୫ ଭାଗ ପରିବାରର ବାସଗୃହ ନାହିଁ । କାମ ଖୋଜିଲେ ମଧ୍ୟ ମିଳୁ ନାହିଁ । କ୍ଷୁଦ୍ର ଓ ନାମମାତ୍ର କୃଷିମାନଙ୍କ ଅବସ୍ଥା ମଧ୍ୟ ଗଣା ଅଧିକେ ଏକାପରି । ଏହିପରି ଅନେକ ସମସ୍ୟା ରହିଛି । ଲେଖି ବସିଲେ ସରିବ ନାହିଁ । ତେଣୁ ଆମର ଧ୍ୱନୀ ଆଉ କେତେ ଦିନଯାଏ ଶୁଭିବ ? ଲୋକେ କ'ଣ ସବୁ ଦିନେ ଧ୍ୱନୀ ଶୁଣୁଥିବେ ?

ଏଣେ ଆମର ଲୋକ ସଂଖ୍ୟା ଦ୍ରୁତ ଗତିରେ ବଢ଼ି ଚାଲିଛି । ହିସାବ କରି ଦେଖାଯାଉଛି ଯେ ଆଉ ୧୦ ବର୍ଷ ପରେ ଲୋକସଂଖ୍ୟା ପାଖାପାଖି ୯୯ କୋଟି ହୋଇଯିବ । ଦେଶ ସ୍ୱାଧୀନ ହେଲା ବେଳକୁ ଅର୍ଥାତ୍ ୧୯୪୭ ମସିହାରେ ଆମର ଲୋକସଂଖ୍ୟା ଥିଲେ ମାତ୍ର ୩୫ କୋଟି, ତେଣୁ ବର୍ଷକୁ ଏକ କୋଟିରୁ ଅଧିକ ଶିଶୁ ଆମ ସହିତ ମିଶିବାରେ ଲାଗିଛନ୍ତି ଓ ସେମାନେ କୋଡ଼ିଏ ବର୍ଷ ପରେ ପୁଣି ଘର ସଂସାର କରୁଛନ୍ତି । ଏତେ ଲୋକଙ୍କ ପାଇଁ ଖାଦ୍ୟ, ବାସଗୃହ, ବସ୍ତ୍ର, ଚିକିତ୍ସା ବ୍ୟବସ୍ଥା, ରାସ୍ତାଘାଟ, ପାନୀୟ ଜଳ, ଶିକ୍ଷା ଇତ୍ୟାଦିର ବ୍ୟବସ୍ଥା କରିବା ସହଜ ହେଉନାହିଁ । ତେଣୁ ଗ୍ରାମର ଉନ୍ନତି ଆଶାନୁରୂପେ ହୋଇପାରୁ ନାହିଁ ।

ସୁଖର କଥା କେନ୍ଦ୍ରର ନୂଆ ସରକାର ଏବେ ଗ୍ରାମ ବିକାଶର କାର୍ଯ୍ୟକ୍ରମ ପ୍ରତି ଗୁରୁତ୍ୱ ଦେଉଛନ୍ତି । ଦେଶର ମୋଟ ସମ୍ବଳର ଶତକଡ଼ା ୭୦ ଭାଗ ଗ୍ରାମ ଗହଳର ଉନ୍ନତି ପାଇଁ ବ୍ୟୟ କରାଯିବ ବୋଲି ଜଣାଯାଉଛି । ମାତ୍ର ଗ୍ରାମ ଗହଳର ଉନ୍ନତି କହିଲେ କେତେଗୁଡ଼ିଏ କାର୍ଯ୍ୟର ସମଷ୍ଟି ମାତ୍ର । ସେହି କାର୍ଯ୍ୟଗୁଡ଼ିକ ହେଲା : କୃଷି, ଶିକ୍ଷା, ସ୍ୱାସ୍ଥ୍ୟ, ଗମନାଗମନ, ବାସଗୃହ, ପାନୀୟ ଜଳ, ଗ୍ରାମ ବିଦ୍ୟୁତିକରଣ ଇତ୍ୟାଦି । ଏତେଗୁଡ଼ିଏ କାର୍ଯ୍ୟ କେବେହେଲେ ସମାନ ପରିମାଣରେ ଓ ସମକାଳରେ ଅଗ୍ରଗତି କରିପାରିବ ନାହିଁ । ଏହାର କାରଣ ଅନେକ । ତେଣୁ ଆମକୁ ଅଗ୍ରାଧିକାର ଭିତ୍ତିରେ କେତେକ କାର୍ଯ୍ୟ କରିବାକୁ ପଡ଼ିବ । ତା'ହେଲେ ଗ୍ରାମବାସୀଙ୍କର ଜରୁରୀ ଆବଶ୍ୟକତା ମେଣ୍ଟାଯାଇ ପାରିବ ।

ଆମର ବର୍ତ୍ତମାନର ସମସ୍ୟା ଆମେରିକାରେ ମଧ୍ୟ ଗତ ଶତାବ୍ଦୀରେ ରହିଥିଲା । ଗ୍ରାମାଞ୍ଚଳରେ ଖାଦ୍ୟାଭାବ, ଦାରିଦ୍ର୍ୟ ଓ ବେକାରୀ ଉତ୍କଟ ଆକାର ଧାରଣ କରିଥିଲା । ମାତ୍ର ଆବ୍ରାହାମ୍ ଲିଙ୍କନ୍ ଯେତେବେଳେ ଆମେରିକାର ରାଷ୍ଟ୍ରପତି ଦାୟିତ୍ୱ ନେଲେ, ସେ ଚତୁରତାର ସହିତ ଏହି ସମସ୍ୟାର ସମାଧାନ କଲେ । ସେହି ସମୟଠାରୁ ଆମେରିକା କୃଷିରେ ଅଗ୍ରଗତି କରି ଚାଲିଲା ।

ଆବ୍ରାହାମ୍ ଲିଙ୍କନ୍ ରାଷ୍ଟ୍ରପତି ଦାୟିତ୍ୱ ନେବା ପରେ ପରେ ଦେଶର ବିଭିନ୍ନ କ୍ଷେତ୍ରରେ ପ୍ରତିଷ୍ଠିତ ବୁଦ୍ଧିଜୀବୀମାନଙ୍କୁ ହ୍ୱାଇଟ୍ ହାଉସ୍‌କୁ ନିମନ୍ତ୍ରଣ କଲେ । ଗ୍ରାମାଞ୍ଚଳର କୃଷି, ଶିକ୍ଷା, ସ୍ୱାସ୍ଥ୍ୟ, ପାନୀୟ ଜଳ, ବାସଗୃହ ଇତ୍ୟାଦି ସମ୍ପର୍କରେ ଆଲୋଚନା ଚାଲିଲା । ବିଶେଷଜ୍ଞମାନେ ସେମାନଙ୍କ ସୁପାରିଶକୁ ରାଷ୍ଟ୍ରପତିଙ୍କ ନିକଟରେ ଦାଖଲ କଲେ । ମାତ୍ର ରାଷ୍ଟ୍ରପତି ପଚାରିଲେ ସମସ୍ୟାଗୁଡ଼ିକର ସମାଧାନ ପାଇଁ ଆପଣମାନଙ୍କ ସୁପାରିଶ ସବୁ ପାଇଲି, ମାତ୍ର ସବୁ ସୁପାରିଶଗୁଡ଼ିକୁ ଏକାବେଳକେ କାର୍ଯ୍ୟକାରୀ କରିବା କାହାରି ପକ୍ଷେ ସମ୍ଭବ ନୁହେଁ । ତେଣୁ କେଉଁ ସୁପାରିଶକୁ ଆଗେ କାର୍ଯ୍ୟକାରୀ କରିବି ତାହା ଆପଣମାନେ ସ୍ଥିର କରନ୍ତୁ ।

ତା'ପରେ ବିଶେଷଜ୍ଞମାନଙ୍କ ମଧ୍ୟରେ ପୁଣି ଆଲୋଚନା ଚାଲିଲା । ଶେଷରେ ସ୍ଥିର ହେଲା : କୃଷି ଉତ୍ପାଦନ ବୃଦ୍ଧିକୁ ଅଗ୍ରାଧିକାର ଦିଆଯିବା ଆବଶ୍ୟକ । ଏହାର କାରଣ ହେଲା କୃଷି ଉତ୍ପାଦନ ବଢ଼ିଲେ ଦେଶର ଖାଦ୍ୟ ସମସ୍ୟା ଦୂର ହେବ । ବିଦେଶରୁ ଖାଦ୍ୟ ଆମଦାନୀ ବନ୍ଦ ହେଲେ ସରକାରଙ୍କର ଅର୍ଥନୈତିକ ଅବସ୍ଥାର ଉନ୍ନତି ଘଟିବ । ଏହାଦ୍ୱାରା ଗ୍ରାମ ଉନ୍ନତି ପାଇଁ ଆବଶ୍ୟକୀୟ ଅର୍ଥ ବରାଦ କରାଯାଇ ପାରିବ । ଅନ୍ୟ ପକ୍ଷରେ, ଗ୍ରାମାଞ୍ଚଳର ଲୋକମାନେ ସେହି ଗ୍ରାମରେ ବା ପାଖ ଆଖରେ କାମ ପାଇବେ । କାମ ପାଇବା ପାଇଁ ସେମାନଙ୍କୁ ରେଳ୍ ମଟରରେ ସହରକୁ ଆସିବାକୁ ପଡ଼ିବ ନାହିଁ । ଲୋକଙ୍କର ଖାଦ୍ୟାଭାବ ଦୂର ହେଲେ ଅର୍ଥନୈତିକ ଅବସ୍ଥାରେ ଧୀରେ ଧୀରେ ଉନ୍ନତି

ଘଟିବ । ତେଣୁ ଗ୍ରାମାଞ୍ଚଳର ସମସ୍ୟା ଆପେ ଆପେ ସମାଧାନ ହୋଇଯିବ ।

ବିଶେଷଜ୍ଞମାନଙ୍କର ଏହି ପରାମର୍ଶକୁ ରାଷ୍ଟ୍ରପତି ଲିଙ୍କନ୍ ଅକୁଣ୍ଠିତ ଚିତ୍ତରେ କାର୍ଯ୍ୟକାରୀ କରାଇଲେ । କୃଷକମାନଙ୍କୁ ସେମାନଙ୍କ ଆବଶ୍ୟକ ମତେ ଋଣ ନେବା ପାଇଁ ବ୍ୟାଙ୍କଗୁଡ଼ିକୁ ନିର୍ଦ୍ଦେଶ ଦିଆଗଲା । ଋଣ ପାଇବା ପାଇଁ କୌଣସି ପ୍ରତିବନ୍ଧକ ରହିଲା ନାହିଁ । ସରକାର ଏହି ବନ୍ଧକ ପାଇଁ ବ୍ୟାଙ୍କ୍ ସହିତ ଚୁକ୍ତି କଲେ । କୃଷକମାନେ ଋଣ ସୁଝି ନପାରିଲେ ସରକାର ସୁଝିବେ ଓ ପରେ ସହଜ କିସ୍ତିରେ ସେମାନଙ୍କଠାରୁ ଆଦାୟ କରିବେ । ଲିଙ୍କନ୍‌ଙ୍କର ଏହି ସାହସିକ ପଦକ୍ଷେପ ସଫଳ ହେଲା । ଆମେରିକାର କୃଷି ଉତ୍ପାଦନ ବଢ଼ିଲା ଓ କୃଷକମାନଙ୍କ ଅର୍ଥନୈତିକ ଅବସ୍ଥାର ଉନ୍ନତି ଘଟିଲା । ଏହାପରେ କାଳକ୍ରମେ ଆମେରିକାର ଗ୍ରାମ ବିକାଶ ସମ୍ପନ୍ନ ହୋଇ ପାରିଲା ।

ଏବେ ଆମ ଦେଶରେ ସେହିପରି ପଦକ୍ଷେପ ଆବଶ୍ୟକ ହେଉଅଛି । ଏହା ନହେଲେ ଆମର ଗ୍ରାମ ବିକାଶର ଗତି ମନ୍ଥର ହୋଇ ରହିଥିବ । ଗ୍ରାମ ବିକାଶର ପ୍ରଥମ ପଦକ୍ଷେପ — କୃଷି ଉତ୍ପାଦନ ବୃଦ୍ଧି ପାଇଁ ଦେଶରେ ଏବେ ଅନେକ ବୈଷୟିକ ତଥ୍ୟ ଉଦ୍ଭାବିତ ହେଲାଣି । ବୈଷୟିକ ତଥ୍ୟର ଅଭାବ ନାହିଁ କହିଲେ ଚଳେ । ମାତ୍ର ଏହାର ବ୍ୟବହାର କରିବ କିଏ ? କୃଷକମାନଙ୍କ ମଧ୍ୟରୁ ଅଧିକାଂଶ ନିରକ୍ଷର । ତେଣୁ ସେମାନଙ୍କ ନିକଟରେ ପହଞ୍ଚାଇବା ଦାୟିତ୍ୱ ସରକାରୀ ଅଫିସର ବା ଶିକ୍ଷିତ ଲୋକଙ୍କର । ମାତ୍ର ସେମାନଙ୍କର ଯଦି ଏଥିରେ ଆଗ୍ରହ ନଥାଏ, ତାହାଲେ କୃଷି ଉତ୍ପାଦନ ବୃଦ୍ଧି ସମ୍ଭବ ହେବ ନାହିଁ ।

ତେଣୁ ଗ୍ରାମ ଗହଳର ବିକାଶ ପାଇଁ ସରକାର ପ୍ରଥମେ କୃଷି ଉତ୍ପାଦନ କିପରି ବୃଦ୍ଧି ପାଇବ, ସେଥିପାଇଁ କାର୍ଯ୍ୟ କରିବା ଉଚିତ । ଏହି କାର୍ଯ୍ୟରେ ଅନେକ ସମସ୍ୟା ରହିଛି । ସେଗୁଡ଼ିକୁ ସାହସିକତାର ସହିତ ଥରେ ସମାଧାନ କରାଇଲେ ସବୁଦିନ ପାଇଁ ଆମର କୃଷି ଉତ୍ପାଦନର ଧାରା ବଦଳିଯିବ । ତା'ପରେ କାଳକ୍ରମେ ଅନ୍ୟ ସମସ୍ୟା ଯଥା—ଶିକ୍ଷା, ସ୍ୱାସ୍ଥ୍ୟ, ବାସଗୃହ ଇତ୍ୟାଦିଗୁଡ଼ିକର ସମାଧାନ ସମ୍ଭବ ହେବ, ଯେପରି ଆମେରିକାରେ ଗତ ଶତାବ୍ଦୀରେ ହୋଇଥିଲା ।

ସୂଚନା ବିଶେଷଜ୍ଞ,
କୃଷି ବିଶ୍ୱବିଦ୍ୟାଳୟ,
ଭୁବନେଶ୍ୱର-୩ ।

## ପୁରୀରେ ପେନ୍‌ସନ୍ ଅଦାଲତ

ପୁରୀ ସର୍କିଟ୍ ହାଉସ୍‌ରେ ଜାନୁଆରୀ ୯ ଓ ୧୦ ତାରିଖ, ଦୁଇ ଦିନ ଧରି ପେନ୍‌ସନ୍ ଅଦାଲତର ବୈଠକ ବସିଥିଲା । ଅବସରପ୍ରାପ୍ତ କର୍ମଚାରୀଙ୍କ ମୋଟ ୯୯ଟି ପେନ୍‌ସନ୍ ମାମଲା ବିଚାର କରାଯାଇ ତନ୍ମଧ୍ୟରୁ ୭୭ଟି ମାମଲାର ସିଦ୍ଧାନ୍ତ ଗ୍ରହଣ କରାଯାଇଥିଲା ।

ରାଜ୍ୟ ଅର୍ଥ ବିଭାଗର ଅତିରିକ୍ତ ଶାସନ ସଚିବ ଶ୍ରୀ ବିନୋଦ ବିହାରୀ ପଲେଇ ଏଥିରେ ଅଧ୍ୟକ୍ଷତା କରିଥିଲେ । ଡେପୁଟି ଆକାଉଣ୍ଟାଣ୍ଟ ଜେନେରାଲ୍ ଶ୍ରୀମତୀ ଅନିତା ପଟ୍ଟନାୟକ ଓ ଆକାଉଣ୍ଟସ୍ ଅଫିସର୍ ଶ୍ରୀ ଏସ୍. ପି. ସରକାର ଏବଂ ସମ୍ପୃକ୍ତ ବିଭାଗୀୟ ଅଫିସରମାନେ ଏହି ବୈଠକରେ ଯୋଗ ଦେଇଥିଲେ ।

ପେନ୍‌ସନ୍ ଅଦାଲତ ସେଠାରେ କେତେକ ଅବସରପ୍ରାପ୍ତ କର୍ମଚାରୀଙ୍କଠାରୁ ପେନ୍‌ସନ୍ ମଞ୍ଜୁରୀ ସଂକ୍ରାନ୍ତୀୟ ଦରଖାସ୍ତ ଗ୍ରହଣ କରି ଆବଶ୍ୟକୀୟ ପରାମର୍ଶ ପ୍ରଦାନ କରିଥିଲେ ।

# କୃଷି ଓ କୃଷିପର୍ବ

ଇଞ୍ଜିନିୟର୍ ରଘୁନାଥ ପାତ୍ର

"କାଣ୍ଠେ ହସ୍ତେ ଚ କର୍ଣ୍ଣେ ଚ ସୁବର୍ଣ୍ଣଂ ଯଦି ବିଦ୍ୟତେ ।
ଉପବାସ ସ୍ତଥାପି ସ୍ୟାଦନ୍ନା ଭାବେନ ଦେହିନାମ୍ ॥"

'କୃଷି ପାରାଶର' ଶାସ୍ତ୍ରର ଉପରୋକ୍ତ ଶ୍ଳୋକରୁ ଅନ୍ନର ବୈଶିଷ୍ଟ୍ୟ ସହଜରେ ଅନୁମେୟ । କଣ୍ଠ, ହସ୍ତ ଓ କର୍ଣ୍ଣର ବହୁବିଧ ସ୍ୱର୍ଣ୍ଣାଳଙ୍କାର ଅନ୍ନାଭାବରେ ଧନୀଙ୍କର କୌଣସି ଉପକରଣରେ ଆସେ ନାହିଁ । ଏପରିକି ଉପବାସ ରହିବାକୁ ପଡେ ।

ଚାଣକ୍ୟଙ୍କ ଭାଷାରେ ବର୍ଷା ଜଳ ସମ ଜଳ ଦୁର୍ଲ୍ଲଭ । ଆତ୍ମବଳସମ ବଳ ଅଦୃଷ୍ଟ ପ୍ରାୟ । ନେତ୍ରସମ ତେଜ ବିରଳ ଓ ଧାନ୍ୟ ସମ ପ୍ରିୟ ବସ୍ତୁ ସୁଦୁର୍ଲ୍ଲଭ ।

"ନାସ୍ତି ମେଘ ସମଂ ତୋୟଂ ନାସ୍ତି ଆତ୍ମସମଂ ବଳମ୍ ।
ନାସ୍ତି ଚକ୍ଷୁସମଂ ତେଜୋ ନାସ୍ତି ଧାନ୍ୟ ସମଂ ପ୍ରିୟମ୍ ॥"
(ଚାଣକ୍ୟ ନୀତିଶାସ୍ତ୍ର)

ପୁନଶ୍ଚ ଶ୍ରୀମଦ୍ ଭାଗବତ୍ ଗୀତାର ତୃତୀୟ ଅଧ୍ୟାୟ ଚତୁର୍ଦ୍ଦଶ ଶ୍ଳୋକରୁ ଅନ୍ନର ପ୍ରାଧାନ୍ୟ ସହଜରେ ଅନୁମେୟ । ଅନ୍ନରୁ ଜୀବ ଜଗତର ସୃଷ୍ଟି । ଅନ୍ନରେ ଜୀବଜଗତ ଉଜ୍ଜୀବିତ । ବୃଷ୍ଟିରୁ ଅନ୍ନର ଉତ୍ପତ୍ତି । ଯଜ୍ଞରୁ ବୃଷ୍ଟି ଓ କର୍ମରୁ ଯଜ୍ଞ ହୁଏ ।

"ଅନ୍ନାଦ୍‌ଭବନ୍ତି ଭୂତାନି, ପର୍ଜନ୍ୟାଦନ୍ନ ସମ୍ଭବଃ ।
ଯଜ୍ଞାଦ୍ ଭବତି ପର୍ଜ୍ଜନ୍ୟୋ, ଯଜ୍ଞଃ କର୍ମ ସମୁଦ୍ଭବଃ ॥"
(ଶ୍ରୀମଦ୍‌ଭାଗବତ ଗୀତା ୩/୧୪)

ବାସ୍ତବିକ୍ ଅନ୍ନ ହିଁ ଜୀବନ । ଅନ୍ନ ହିଁ ପ୍ରାଣ । ସୁର, ନର ଓ ମୁନି ସମସ୍ତେ ଏହି ଅନ୍ନରେ ଉଜ୍ଜୀବିତ । ତେବେ ଅନ୍ନ ଧାନ୍ୟ ସମ୍ଭୂତ ଓ ଧାନ୍ୟ କୃଷି ବିନା ଅସମ୍ଭବ । ନିୟମିତ କୃଷି ସ୍ୱର୍ଣ୍ଣପ୍ରସୂ କିନ୍ତୁ ଅବହେଳା ଦାରିଦ୍ର୍ୟର ସୂତ୍ରପାତ କରିଥାଏ । ଦେବତା, ମେଘ, ବସୁଧା, ହଳ, ବଳଦ ଓ କୃଷକ, ଏ ସମସ୍ତେ କୃଷିର କାରଣ ।

କୃଷିକୁ କେନ୍ଦ୍ର କରି ବହୁ ଦେବଦେବୀ ଆରାଧନା, ପାନିପାତ୍ର, ପର୍ବପର୍ବାଣି ଅନୁଷ୍ଠିତ ହୋଇଥାଏ । ଏ ସମସ୍ତ ବସୁମାତା, ଗୋ-ପୂଜନ, ଇନ୍ଦ୍ରପୂଜା ଓ ବୃକ୍ଷ ତଥା କ୍ଷେତ୍ରପୂଜା ପାଇଁ ଉଦ୍ଦିଷ୍ଟ । ଆର୍ଯ୍ୟ ମନୀଷୀଗଣ ଯାହାଠାରୁ ଉପକାର ପାଇଛନ୍ତି, ତାଙ୍କୁ ଦେବତା ପରି ଆରାଧନା କରିଛନ୍ତି । ଏହା ହିଁ ଆର୍ଯ୍ୟଧର୍ମ ଓ ଆର୍ଯ୍ୟ ସଂସ୍କୃତିର ବୈଶିଷ୍ଟ୍ୟ ।

**୧. ବସନ୍ତ ପଞ୍ଚମୀ ବା ଶ୍ରୀପଞ୍ଚମୀ :** ଶାସ୍ତ୍ରୀୟ ମତରେ ସ୍ୱାତୀ, ଉତ୍ତର ଫାଲ୍‌ଗୁନୀ, ଉତ୍ତରାଷାଢା, ଉତ୍ତର ଭାଦ୍ରପ, ରୋହିଣୀ, ମୃଗଶିରା, ମୂଳା, ପୁନର୍ବସୁ, ପୁଷ୍ୟା ଓ ଶ୍ରବଣା ନକ୍ଷତ୍ର; ବୃଷ, ମୀନ, କନ୍ୟା, ମିଥୁନ, ଧନୁ ଓ ବୃଶ୍ଚିକାଦି ରାଶି ଦଶମୀ, ଏକାଦଶୀ, ଦ୍ୱିତୀୟା, ପଞ୍ଚମୀ ତ୍ରୟୋଦଶୀ, ତୃତୀୟା ଓ ସପ୍ତମୀ ତିଥି ଏବଂ ସୋମ, ବୁଧ, ଗୁରୁ ଓ ଶୁକ୍ରବାରାଦି କୃଷିକର୍ମ ପାଇଁ ପ୍ରଶସ୍ତ । ଚନ୍ଦ୍ର ସଂଯୁକ୍ତ ରବି ଶୁଦ୍ଧି ହେଲେ ହଳ ପ୍ରସାରଣ କରାଯାଏ ।

ସାଧାରଣତଃ ବସନ୍ତ ପଞ୍ଚମୀ ହଳ ପ୍ରସାରଣ ପାଇଁ ପ୍ରଶସ୍ତ । ଉକ୍ତ ଦିବସରେ ଭୂଦେବୀ ସ୍ୱରୂପା ସରସ୍ୱତୀଙ୍କୁ ଆରାଧନା କରାଯାଏ । ବାଳକବାଳିକାଗଣ ଉକ୍ତ ଦିବସଟି ଉତ୍ସବ ରୂପେ ପାଳନ କରି ଆନନ୍ଦ ମୁଖରିତ କରନ୍ତି । ବିଦ୍ୟାରମ୍ଭ ପାଇଁ ଶ୍ରୀପଞ୍ଚମୀ ପ୍ରଶସ୍ତ ।

ହଳ ପ୍ରସାରଣ ପୂର୍ବରୁ ଦୁଇଟି ଶୁକ୍ଳ ବସ୍ତ୍ର, ଶୁକ୍ଳ ପୁଷ୍ପ ଓ ଗନ୍ଧାଦି ଦ୍ୱାରା ହଳପୂଜା ପୃଥିବୀ, ପୃଥୁ ଓ ପ୍ରଜାପତିଙ୍କ ଅର୍ଚ୍ଚନା କରିବା ବିଧେୟ । ଅଗ୍ନି ପ୍ରଦକ୍ଷିଣ ପୂର୍ବକ ବହୁବିଧ ଦାନ ଓ ଦକ୍ଷିଣା ପ୍ରଦାନ କରାଯାଏ । ଲଙ୍ଗଳର ଅଗ୍ରଭାଗ ସୁବର୍ଣ୍ଣଯୁକ୍ତ ଓ ମଧୁ ଲେପନ କରି ନଗର ବାମ ପାର୍ଶ୍ୱରେ ହଳ ପ୍ରସାରଣ କରାଯାଏ । ଅଗ୍ନି, ଦ୍ୱିଜ ଓ ଦେବତାଙ୍କୁ ଯଥାବିଧି ପୂଜନ କରି ବାସବ, ବ୍ୟାସ, ପୃଥୁ, ରାମ ଓ ପରାଶରଙ୍କୁ ସ୍ମରଣ କରିବା ବିଧେୟ । କୃଷ୍ଣ ବର୍ଣ୍ଣ ବା କୃଷ୍ଣ ଲୋହିତ ବର୍ଣ୍ଣ ପୁଚ୍ଛଛେଦିତ ବୃଷ ବା ବଳଦ ହଳ ପାଇଁ ପ୍ରଶସ୍ତ । ବଳଦ ଦ୍ୱୟର ମୁଖ ଓ ପାର୍ଶ୍ୱ

ଲବଣ କିମ୍ବା ଘୃତ ମାଖି ପ୍ରତ୍ୟହ ଧୌତ କରାଯାଏ । କୃଷକ ଉତ୍ତରାଭିମୁଖୀ ହୋଇ ନିମ୍ନୋକ୍ତ ମନ୍ତ୍ରରେ ଇନ୍ଦ୍ରଙ୍କୁ ଅର୍ଘ୍ୟ ପ୍ରଦାନ କରିବା ବିଧେୟ ।

"ଶୁକ୍ଳ ପୁଷ୍ପ–ସମାଯୁକ୍ତଂ ଦଧିକ୍ଷୀର ସମନ୍ୱିତମ୍ ।
ସୁପ୍ରସନ୍ନୋ କୁରୁ ଦେବେଶ ! ଗୃହାଣାର୍ଘ୍ୟଂ ଶଚୀପତେ ॥"

ତଦନନ୍ତର ଜାନୁଦ୍ୱୟ ଭୂମି ସଂଲଗ୍ନ କରି ଇନ୍ଦ୍ରଦେବଙ୍କୁ ପ୍ରଣାମ କରାଯାଏ ।

**୨. ଅକ୍ଷୟ ତୃତୀୟା :** ଏହି ପର୍ବ ବୈଶାଖ ମାସରେ ଅନୁଷ୍ଠିତ ହୋଇଥାଏ । ଉକ୍ତ ଦିନ ସମସ୍ତ ଶୁଭକର୍ମ ଓ ମୁଷ୍ଟି ଅନୁକୂଳ ଅନୁଷ୍ଠିତ ହୁଏ । ଶ୍ରୀକ୍ଷେତ୍ରରେ ମହାପ୍ରଭୁଙ୍କ ରଥକର୍ମ ଓ ଚନ୍ଦନଯାତ୍ରାର ଶୁଭାରମ୍ଭ ହୁଏ । ନୂଆ ଘଡି, ପଥୁଲି ଚିତ୍ର ବିଚିତ୍ର କରି ସେଥିରେ ନାନା ପ୍ରକାର ଖାଦ୍ୟ ପଦାର୍ଥ (ଖଇ, ମୁଢି, ଭୂଟାଭଜା, ଖଣ୍ଡଘୋଡା, କଦଳୀ ଓ ଆମ୍ବ) ରଖି ଗୃହରେ କୋଠି କାଟି ଗୃହିଣୀମାନେ ପୂଜାରାଧନା କରନ୍ତି ଏବଂ ତଦନନ୍ତର ବାଳକବାଳିକାମାନଙ୍କୁ ବିତରଣ କରାଯାଏ । ଉକ୍ତ ଉତ୍ସବ ଶ୍ରୀକ୍ଷେତ୍ରରେ ବିଶେଷଭାବେ ଅନୁଷ୍ଠିତ ହୋଇଥାଏ ।

ଦ୍ୱିତୀୟା ଅର୍ଥାତ୍ ପୂର୍ବଦିନ ହିମଜଳ ବା ପରିଷ୍କାର ଥଣ୍ଡାଜଳରେ ବିହନ ଭିଜାଇ ରଖିବାକୁ ହୁଏ । ଅକ୍ଷୟ ତୃତୀୟା ଦିନ ବିଲକୁ ହଳଯାଏ । ମୁଣ୍ଡରେ ଠେକା ଭିଡି, କୃଷକ ବେତାରେ ଧାନ ପୁରାଇ ବିଲକୁ ନିଏ । ପାଟବସ୍ତ୍ରରେ ଧାନ ଆଚ୍ଛାଦିତ ହୋଇଥାଏ । ଗନ୍ଧ ପୁଷ୍ପାଦି ଦ୍ୱାରା ପୂଜାର୍ଚ୍ଚନା ହୁଏ । କୃଷକ ମାନସପଟରେ ଇନ୍ଦ୍ରଦେବଙ୍କୁ ଚିନ୍ତା କରି ତିନିମୁଷ୍ଟି ବିହନ ବପନ କରେ । ପୂର୍ବାଭିମୁଖୀ ହୋଇ ନିମ୍ନୋକ୍ତ ମନ୍ତ୍ର ଉଚ୍ଚାରଣ ପୂର୍ବକ ଇନ୍ଦ୍ରଦେବଙ୍କ ଆଶୀର୍ବାଦ ଓ କୃପାପ୍ରାର୍ଥୀ ହୁଏ । ତଦନନ୍ତର ସ୍ୱର୍ଣ୍ଣପ୍ରସୂ ବସୁମାତାଙ୍କୁ ବାୟୋମନବାକ୍ୟରେ ଆରାଧନା କରି କୃପାଭିକ୍ଷା କରାଯାଏ ।

"ବସୁଧେ ହେମ ଗର୍ଭାସି ବହୁ ଶସ୍ୟ ଫଳପ୍ରଦେ ।
ବସୁ ପୂଜ୍ୟେ ! ନମସ୍ତୁଭ୍ୟଂ ବସୁ ପୂର୍ଣ୍ଣାସ୍ତୁ ମେ କୃଷିଃ ॥
ରୋପୟିଷ୍ୟାମି ଧାନ୍ୟାନାଂ ବୃକ୍ଷ–ବୀଜାନି ପ୍ରାବୃଷି ।
ସୁଖା ଭବନ୍ତି କୃଷକାଃ ଧନ ଧାନ୍ୟ–ସମୃଦ୍ଧିଭିଃ ॥
ବାସବୋନିତ୍ୟ ବର୍ଷିସନ୍ନିତ୍ୟ ବର୍ଷାନ୍ତୁ ତୋୟମଃ ।
ଶସ୍ୟସର୍ପଭୟଃ ସର୍ବାଃ ସଫଳାଃ ସନ୍ତୁ ନୀରୁଜାଃ ॥"

କ୍ଷେତ୍ରାଧିପ ବସୁମାତାଙ୍କୁ ବହୁବାର ପ୍ରଣାମ କରି କୃଷକଙ୍କ ପ୍ରୀତ୍ୟର୍ଥେ ନବବସ୍ତ୍ରାଦି ବହୁବିଧ ଉପହାର ଓ ରୁଚିକର ଭୋଜନ ପ୍ରଦାନ କରିବା ବିଧେୟ । ଏହିପରି ଅନୁଷ୍ଠାନ କଲେ କୃଷିର ବିଘ୍ନ ବିନଷ୍ଟ ହୁଏ ।

**୩. ରଜପର୍ବ :** ଜ୍ୟେଷ୍ଠ ଅର୍ଥାତ୍ ବୃଷମାସର ମାସାନ୍ତ ବିଶେଷ ଦିନ ଓ ଆଷାଢ ବା ମିଥୁନ ମାସର ସଂକ୍ରାନ୍ତି ବା ପ୍ରଥମ ଦିନ ଓ ତହିଁର ପରଦିନ, ଏହିପରି ତିନିଦିନକୁ ରଜ କୁହାଯାଏ । ଉକ୍ତ ଦିବସଗୁଡିକରେ ପୃଥିବୀ ରଜସ୍ୱଳା ହେବା ଶାସ୍ତ୍ରରେ କଳ୍ପିତ । ଉକ୍ତ ଦିବସଗୁଡିକରେ ହଳ, ପୃଥିବୀ ଖନନ, ବୀଜ ବପନାଦି କୃଷିକର୍ମ ନିଷେଧ । ବୃଷମାସର ଶେଷ ଦିବସକୁ 'ପହିଲି ରଜ' ଓ ମିଥୁନ ମାସର ସଂକ୍ରାନ୍ତି ଦିବସକୁ 'ରଜ ସଂକ୍ରାନ୍ତି' ଏବଂ ଦ୍ୱିତୀୟ ଦିବସକୁ 'ଭୂଦାହ ବା ଭୂଇଁ ଦହିଁଣ' କୁହାଯାଏ । ଉକ୍ତ ଦିବସତ୍ରୟ 'ରଜପର୍ବ' ନାମରେ ଅଭିହିତ । ପର ଦିବସକୁ 'ବସୁମତୀ ସ୍ନାନ' ବା ଠାକୁରାଣୀ ଗାଧୁଆ' କୁହାଯାଏ । ରଜପର୍ବରେ ପୃଥିବୀ ରଜସ୍ୱଳା ହେବାରୁ ଗୃହିଣୀମାନେ, ଏପରିକି ଠାକୁରାଣୀମାନଙ୍କର ସ୍ନାନ ନିଷେଧ ହୁଏ । ଠାକୁରାଣୀ ଗାଧୁଆ ଦିନ ଠାକୁରାଣୀ ଓ ଗୃହ ବ୍ୟବହୃତ ଶିଳପୁଆକୁ ଚୂଆ, ହଳଦି ଲଗାଇ ସ୍ନାନ କରାଯାଏ । ଗୃହିଣୀଗଣ କେଶ ପ୍ରକ୍ଷାଳନ ପୂର୍ବକ ହରିଦ୍ରା ପ୍ରଲେପ ଦେଇ ସ୍ନାନ କରନ୍ତି । ସେମାନେ ଦୈନନ୍ଦିନ କର୍ମରୁ ଅବ୍ୟାହତି ନେଇ କ୍ରୀଡାଦିରେ ମନୋନିବେଶ କରନ୍ତି । ଭିଜା ପଦରେ ବସୁଧାରେ ଚଳପ୍ରଚଳ ହୁଅନ୍ତି ନାହିଁ । ସୁମିଷ୍ଟ ଖାଦ୍ୟ ଓ ପିଷ୍ଟକାଦି ଭୋଜନ, ଦୋଳିଖେଳ ଓ ଗୀତ ଗାଇ ସମୟକୁ ଆମୋଦପ୍ରମୋଦରେ ଅତିବାହିତ କରନ୍ତି ।

"ବୃଷାନ୍ତେ ମିଥୁନସାଦୌ ତଦ୍ଦ୍ୱିତୀୟେ ଦିନତ୍ରୟଂ ।
ରଜସ୍ୱଳା ସ୍ୟାତ୍ ପୃଥିବୀ କୃଷିକର୍ମ ବିଗର୍ହିତଂ ॥
ହଳାନାଂ ବାହନଂ ଚୈବ ବୀଜାନାଂ ବପନଂ ତଥା ।
ତାବଦେନ ନ କୁର୍ବୀତ ଯାବତ୍ ପୃଥ୍ୱୀ ରଜସ୍ୱଳା ॥
ପୃଥ୍ୱୀ ରଜସ୍ୱଳା ଯାବତ୍ ଖନନଂ ଛେଦନଂ ତ୍ୟଜେତ୍ ।
ଅନ୍ୟ କର୍ମାଣି କୁର୍ବୀତ ପୌତ୍ର ଦୈବଂ ନମାନୁଷଂ ॥"

(ଅରୁଣୋଦୟ ପ୍ରେସ – ନୂତନ ପଞ୍ଜିକା)

**୪. ଇନ୍ଦ୍ର ଗୋବିନ୍ଦ ପୂଜା :** ଭାଦ୍ରବ ପୂର୍ଣ୍ଣିମା ବା ଇନ୍ଦ୍ର ପୂର୍ଣ୍ଣିମାରେ ଏହି ଉତ୍ସବ ଅନୁଷ୍ଠିତ ହୁଏ । ଉକ୍ତ ଦିବସ ଭାଗବତର ବ୍ରଜେନ୍ଦ୍ରନନ୍ଦନ ଶ୍ରୀକୃଷ୍ଣଙ୍କ ଲୀଳାସ୍ମରଣ କରାଇ ଦିଏ । ଭଗବାନ ଶ୍ରୀକୃଷ୍ଣ ଇନ୍ଦ୍ରଦେବଙ୍କ ପୂଜା ଓ ଆରାଧନା ସ୍ଥଗିତ ରଖି ପ୍ରକୃତି ବା ବସୁମାତା (ଗୋବର୍ଦ୍ଧନାଚଳ) ଉପାସନା ପ୍ରବର୍ତ୍ତନ କରିଥିଲେ । ଇନ୍ଦ୍ରଦେବଙ୍କ ସପ୍ତଦିବସ ବ୍ୟାପୀ ଅବାରିତ ବୃଷ୍ଟି ଓ ବଜ୍ରାଘାତ ବ୍ୟର୍ଥ ହୋଇଥିଲା । ଶ୍ରୀକୃଷ୍ଣ ଗୋବର୍ଦ୍ଧନ ଧାରଣ କରି ବ୍ରଜବାସୀଙ୍କୁ ରକ୍ଷା କରିଥିଲେ । ଇନ୍ଦ୍ର ବିସ୍ମିତ ଓ ପରାଜିତ ହୋଇ ଶ୍ରୀକୃଷ୍ଣଙ୍କ ଶରଣାପନ୍ନ ହୋଇଥିଲେ ।

"ଇନ୍ଦ୍ର ସପତ ଦିନ ବୃଷ୍ଟି କଲା ।
ବଜ୍ରାଘାତରେ ପଥର ବର୍ଷିଲା ॥
ଛତ୍ର ଆକାରେ ଗିରିବର ଧରି ।
ଗୋପ ସମ୍ପଦ ରଖିଲେ ମୁରାରୀ ॥
ଇନ୍ଦ୍ର ହାରିଣ ଶରଣ ପଶିଲା ।
ଗୋପେ ଗୋବିନ୍ଦ ନାମ ଦେଇଗଲା ॥"

(ଶ୍ରୀମଦ୍ ଭାଗବତ)

ମହର୍ଷି କଶ୍ୟପଙ୍କ ଜ୍ୟେଷ୍ଠ ପୁତ୍ର ଇନ୍ଦ୍ର ଓ କନିଷ୍ଠ ପୁତ୍ର ବାମନ । ଏଣୁ ଇନ୍ଦ୍ର ଶ୍ରୀକୃଷ୍ଣଙ୍କ ସମ୍ମାନାସ୍ପଦ । ଇନ୍ଦ୍ର ଉଭୟଙ୍କ ପରିଚୟ ସାବ୍ୟସ୍ତ କରି ଶ୍ରୀକୃଷ୍ଣଙ୍କୁ ଉପେନ୍ଦ୍ର ଓ ଗୋବିନ୍ଦ ନାମରେ ନାମିତ କରିଥିଲେ । ଏହି ହେତୁ ବ୍ରଜବାସୀ ଜ୍ୟେଷ୍ଠ ଇନ୍ଦ୍ର ଓ କନିଷ୍ଠ ଗୋବିନ୍ଦଙ୍କ ଏକତ୍ର ପୂଜାର୍ଚ୍ଚନା କରିଥିଲେ । ଶଚୀପତି ଇନ୍ଦ୍ରଙ୍କ କ୍ଷଣିକ କୃପାଦୃଷ୍ଟି ଧରିତ୍ରୀକୁ ଶସ୍ୟଶ୍ୟାମଳା କରିଥାଏ ।

ଉକ୍ତ ଦିବସରେ ଶ୍ରୀକ୍ଷେତ୍ରରେ ବଡ ଛତା ମଠ ପାର୍ଶ୍ୱସ୍ଥ 'ଟିକିରାଗୋହିରି' ନିକଟରେ ମଦନମୋହନ ବିଜେ ହୁଅନ୍ତି । ହରଚଣ୍ଡୀ ସାହୀରୁ ଜନୈକ ସେବକ ସୁସଜ୍ଜିତ ହୋଇ ହସ୍ତୀ ପୃଷ୍ଠରେ ଟିକିରା ଗୋହିରିରେ ଉପସ୍ଥିତ ହୁଅନ୍ତି । ମଦନମୋହନ ଓ ହସ୍ତୀ ପୃଷ୍ଠସ୍ଥ ଇନ୍ଦ୍ରଦେବଙ୍କୁ ଏକତ୍ର ଆରତି ବନ୍ଦାପନା କରାଯାଏ ।

**୫. ରାକ୍ଷୀ ଉତ୍ସବ :** ଏହା ଶ୍ରାବଣ ପୂର୍ଣ୍ଣିମା ବା ରାକ୍ଷୀ ପୂର୍ଣ୍ଣିମାରେ ଅନୁଷ୍ଠିତ ହୋଇଥାଏ । ଉକ୍ତ ଦିବସରେ ଭଗିନୀଗଣ ଭାତୃହସ୍ତରେ ରାକ୍ଷୀସୂତ୍ର ବନ୍ଧନ କରି ଭ୍ରାତୃ ପ୍ରୀତି ପ୍ରଦର୍ଶନ କରନ୍ତି । ପୁରୋହିତଗଣ ଯଜମାନଙ୍କ ହସ୍ତରେ ରାକ୍ଷୀ ପିନ୍ଧାଇ ମନ୍ତ୍ର ଉଚ୍ଚାରଣ ପୂର୍ବକ କଲ୍ୟାଣ ପ୍ରଦାନ କରନ୍ତି । ଶ୍ରୀକ୍ଷେତ୍ରରେ ହଳୀ ବଳଭଦ୍ରଙ୍କ ଜନ୍ମୋତ୍ସବ ଅନୁଷ୍ଠିତ ହୁଏ । ବଳରାମ ଗୋଗୋଷ୍ଠରେ ଜନ୍ମ ହୋଇଥିବାରୁ ପୁରାଣ ପୁରୁଷଙ୍କ ଜନ୍ମୋତ୍ସବ ମାର୍କଣ୍ଡେୟ ପୁଷ୍କରିଣୀ ନିକଟରେ ପାଳିତ ହୋଇଥାଏ ।

ଗୃହସ୍ଥ ଗାଈଗୋରୁ ବଳଦମାନଙ୍କ ସ୍ନାନ ସମାପନ କରି ଚୂଆ, ସିନ୍ଦୂର ଓ ହଳଦି ଦେଇ ଗନ୍ଧ ପୁଷ୍ପାଦି ପ୍ରଦାନ ପୂର୍ବକ ପୂଜାରାଧନା କରିଥାଆନ୍ତି । ବିବିଧ ସୁମିଷ୍ଟ ପିଷ୍ଟକ ପ୍ରଦାନ କରି ଗୋଜାତିକୁ ସନ୍ତୁଷ୍ଟ କରିବା ସଙ୍ଗେସଙ୍ଗେ ଆଶୀର୍ବାଦ କାମନା କରିଥାଆନ୍ତି ।

**୬. ଗର୍ଭଣା ସଂକ୍ରାନ୍ତି :** କାର୍ତ୍ତିକ ମାସର ସଂକ୍ରାନ୍ତି ଗର୍ଭଣା ସଂକ୍ରାନ୍ତି ରୂପେ ଲୋକ ବିଦିତ । ଉକ୍ତ ଦିବସରେ କ୍ଷେତ୍ରର ଈଶାନ କୋଣରେ ପତ୍ରଯୁକ୍ତ ନଳ (ଗର୍ଭଣା ଡାଳ ବା ଫଳନ୍ତି ଉଡୁମ୍ବର (ଯଜ୍ଞ ଡିମିରି) ଡାଳ ) ରୋପଣ କରାଯାଏ । କୃଷକ ପବିତ୍ର ଭାବେ ଗନ୍ଧ ପୁଷ୍ପାଦି ଦ୍ୱାରା ନଳଟିକୁ ପୂଜାକରି ଧାନ୍ୟ ବୃକ୍ଷ ଓ ବସୁମାତାକୁ ପୂଜା କରନ୍ତି । ଦଧି, ନୈବେଦ୍ୟ ଓ ପାୟସ ପ୍ରଦାନ କରି ନିମ୍ନୋକ୍ତ ମନ୍ତ୍ର ପାଠ କରାଯାଏ ।

"ବାଳକାସ୍ତରୁଣା ବୃଦ୍ଧାଃ ସନ୍ତି ଯେ ଧାନ୍ୟ ବୃକ୍ଷକାଃ ।
ଜ୍ୟେଷ୍ଠାଶ୍ଚାପି କନିଷ୍ଠା ବା ସଗର୍ଭା ନିର୍ଗର୍ଭାଶ୍ଚ ଯେ ॥
ଅଦ୍ୟ ଗାମଯେନସ୍ୟ ଭାମସ୍ୟ ଚ ପ୍ରଥୋପରି ।
ତାଡିତା ନଳ ଦଣ୍ଡେନ ସର୍ବେ ସ୍ୟୁଃ ସମ ପୁଷ୍ପିତାଃ ॥
ସମ ପୁଷ୍ପ ଦ୍ରୁମାସାଦ୍ୟ ଫଳନ୍ତ୍ୱଣୁ ଚ ନିର୍ଭରମ୍ ।
ସୁଖା ଭବନ୍ତୁ କୃଷକାଃ ଧନଧାନ୍ୟ ସମନ୍ୱିତା ॥"

ଉକ୍ତ ଦିବସରେ ଘଣ୍ଟକଳସ ଉପାସନା ଦ୍ରଷ୍ଟବ୍ୟ । ଉପାସକ ବିଭିନ୍ନ ପ୍ରକାର ତାନ୍ତ୍ରିକ ଗୀତ ପାଠ କରି ଯଜମାନଙ୍କୁ ସନ୍ତୁଷ୍ଟ କରିବା ସଙ୍ଗେସଙ୍ଗେ ସେମାନଙ୍କ ଦ୍ୱାରସ୍ଥ ହୋଇ ଘଣ୍ଟକଳସର ପୂଜାରାଧନା ଅନୁଷ୍ଠାନ କରିଥାଆନ୍ତି । ବାର୍ଷିକ ପାରିତୋଷିକ ଗ୍ରହଣ କରି ଅନ୍ୟ ଯଜମାନଙ୍କ ଦ୍ୱାରକୁ ଯାଆନ୍ତି । ତତ୍ପରେ ବାଦ୍ୟ ପୂର୍ବକ ସର୍ପକ୍ରୀଡା ଆଶ୍ଚର୍ଯ୍ୟାନ୍ୱିତ ଭାବେ ପରିବେଷଣ କରିଥାଆନ୍ତି । ବିଭିନ୍ନ ପ୍ରକାର ବିଷହାରକ ଗଦ ଯଜମାନ ତଥା ଉପସ୍ଥିତ ଦର୍ଶକଗଣଙ୍କୁ ପ୍ରଦାନ କରନ୍ତି । ଏହି ଗଦ ବିଷାକ୍ତ ଜୀବ ଦଂଶନର ପ୍ରତିଷେଧକ ରୂପେ ବ୍ୟବହୃତ ହୋଇଥାଏ । ଉକ୍ତ ଉତ୍ସବ ତନ୍ତ୍ର ସମ୍ବଳିତ ଓ ଶ୍ରୀକ୍ଷେତ୍ରରେ ବିଶେଷ ରୂପେ ଦୃଷ୍ଟିଗୋଚର ହୁଏ ।

ଗର୍ଭଣ ସଂକ୍ରାନ୍ତି ବେଳକୁ କ୍ଷେତ୍ରରେ ଧାନ ସମ୍ପୂର୍ଣ୍ଣଭାବେ ହୋଇଯାଏ । ଆଗ, ପଛ ଯେତେବେଳେ ବୁଣିଲେ ଗର୍ଭଣ ସଂକ୍ରାନ୍ତିକୁ ଧାନ୍ୟର ପରିପକ୍ୱତା ଆସିଥାଏ ।

"ଆଗେ ବୁଣ, ପଛେ ବୁଣ ।
ଗର୍ଭଣାକୁ ବୁଣ ବୁଣ ॥"

**୭. ଗୋବର୍ଦ୍ଧନ ପୂଜା :** କାର୍ତ୍ତିକ ମାସ ଶୁକ୍ଳ ପ୍ରତିପଦା ଦିନ ଗୋପୂଜନ ଅନୁଷ୍ଠିତ ହୁଏ । ଗୋପାଳଗଣ ଏହି ଦିନ ତୈଳ ଓ ହରିଦ୍ରା ଲଗାଇ ସ୍ନାନ କରନ୍ତି । କୁଙ୍କୁମ ଓ ଚନ୍ଦନ ଦ୍ୱାରା ଶରୀର ବିଭୂଷିତ କରନ୍ତି । ଅନନ୍ତର ଗୋଟିଏ ମୁଷ୍କଚ୍ଛେଦିତ ବୃଷ ବା ବଳଦକୁ ବିବିଧ ଅଳଙ୍କାର, ବସ୍ତ୍ରାଦି ଦ୍ୱାରା ବିଭୂଷିତ କରି ନୃତ୍ୟଗୀତ ବାଦ୍ୟ ସହ ଲଗୁଡ ହସ୍ତରେ ଗ୍ରାମର ଏକ ପ୍ରାନ୍ତରୁ ଅନ୍ୟ ପ୍ରାନ୍ତ ଭ୍ରମଣ କରାନ୍ତି । ସମସ୍ତ ଗ୍ରାମ ଆନନ୍ଦ ଉତ୍ସବରେ ମୁଖରିତ ହୁଏ । ଉକ୍ତ ଦିବସରେ ଗୋମାତାଙ୍କ ଶରୀରରେ ହରିଦ୍ରା, କୁଙ୍କୁମ ଓ ତୈଳ ଦିଆଯାଏ । ତପ୍ତ ଲୌହାଦି ଗୋରୁଙ୍କ ଶରୀରରେ ଦିଆଯାଏ । ଲାଙ୍ଗୁଡ କେଶର ଅଗ୍ରଭାଗ ଛେଦନ କରାଯାଏ । ଉକ୍ତ ଅନୁଷ୍ଠାନ ଗୋମାତାର ସଂବତ୍ସର–ବିଘ୍ନ ବିନାଶ କରିଥାଏ । ଏହା ଗୋ–ପର୍ବ ରୂପେ ସର୍ବତ୍ର ପରିଚିତ ।

ପୂର୍ବଫାଲ୍‌ଗୁନୀ, ପୂର୍ବାଷାଢା, ପୂର୍ବ ଭାଦ୍ରପଦ, ଧନିଷ୍ଠା ଓ କୃତ୍ତିକାଦି ନକ୍ଷତ୍ର ଗୋଯାତ୍ରା ଓ ପ୍ରବେଶ ପାଇଁ ପ୍ରଶସ୍ତ । ଉତ୍ତର ଫାଲ୍‌ଗୁନୀ, ଉତ୍ତରାଷାଢା, ଉତ୍ତର ଭାଦ୍ରପଦ, ରୋହିଣୀ, ପୁଷ୍ୟା, ଶ୍ରବଣା, ହସ୍ତା ଓ ଚିତ୍ରା ନକ୍ଷତ୍ର ଏବଂ ଅମାବାସ୍ୟା, ଚତୁର୍ଦ୍ଦଶୀ ଓ ଅଷ୍ଟମୀ ତିଥିରେ ଗୋ–ଯାତ୍ରା ଓ ଗୋ–ପ୍ରବେଶ ନିଷେଧ । ନିଷିଦ୍ଧ ନକ୍ଷତ୍ର ଓ ତିଥିରେ ଗୋ–ଯାତ୍ରା ବା ପ୍ରବେଶ କଲେ ଗୋରୁ ଓ ଗୃହସ୍ଥର ବିନାଶ ହୁଏ

(କୃଷି ପାରାଶର)

**୮. ମୁଷ୍ଟି ଗ୍ରହଣ :** ମାର୍ଗଶୀର ମାସରେ ମୁଷ୍ଟି ଗ୍ରହଣ କରାଯାଏ । ମୁଷ୍ଟି ଗ୍ରହଣ ବିନା ଧାନ୍ୟଚ୍ଛେଦନ କଲେ କୃଷକର ବିଘ୍ନ ହୁଏ । ଉକ୍ତ ମାସର ଶୁଭଦିନରେ କ୍ଷେତ୍ରରେ ଉପସ୍ଥିତ ହୋଇ ଈଶାନ କୋଣରେ ଧରିତ୍ରୀଙ୍କ ଉପାସନା କରିବା ବିଧେୟ । ଭକ୍ତି ପୂର୍ବକ ଗନ୍ଧପୁଷ୍ପାଦି ପ୍ରଦାନ କରାଯାଏ । ପ୍ରଥମାଷ୍ଟମୀ ମୁଷ୍ଟି ଗ୍ରହଣ ପାଇଁ ପ୍ରକୃଷ୍ଟ । ମୁଷ୍ଟି ଧାନ୍ୟ ଛେଦନ କରି ଧାନ୍ୟମେଣ୍ଡିକୁ ପ୍ରଣାମ କରାଯାଏ । କାହା ସହିତ କଥାବାର୍ତ୍ତା ନ କରି ଏକ ମୁଖୀ ହୋଇ ଗୃହକୁ ଫେରି ଗୃହର ପ୍ରକୋଷ୍ଠରେ ଧାନମେଣ୍ଡା ସ୍ଥାପନ କରାଯାଏ । ଗନ୍ଧପୁଷ୍ପାଦି ଦ୍ୱାରା ପୂଜାରାଧନା ଅନୁଷ୍ଠିତ ହୁଏ । କାର୍ତ୍ତିକ ଓ ପୌଷ ମାସରେ ମୁଷ୍ଟି ଗ୍ରହଣ ଏକାନ୍ତ ବର୍ଜ୍ଜନୀୟ । ଆର୍ଦ୍ରା, ମଘା, ମୃଗଶିରା, ପୁଷ୍ୟା, ହସ୍ତା, ସ୍ୱାତୀ, ମୂଳା ଓ ଶ୍ରବଣା ନକ୍ଷତ୍ର ଧାନ୍ୟଚ୍ଛେଦନ ପାଇଁ ପ୍ରଶସ୍ତ । ମଙ୍ଗଳ, ଶନି ଓ ବୁଧବାରରେ ମୁଷ୍ଟି ଗ୍ରହଣ ନିଷେଧ ।

**୯. ମେଧି ରୋପଣ :** ମାର୍ଗଶୀର ମାସରେ ଖଳା (ମେଧି ବା ମେଢି ରୋପଣ ସ୍ଥାନ) ପରିଷ୍କାର ଓ ସମତଳ କରି ଗୋମୟ ଦ୍ୱାରା ଲେପନ କରାଯାଏ । ଶୁଭଦିନ ଦେଖି ମନ୍ତ୍ର ପୂର୍ବକ ମେଧି ବା ମେଢି ରୋପଣ କରାଯାଏ ।

"କୃତ୍ୱାତୁ ଖଳଙ୍କ ମାର୍ଗେ ସମଂ ଗୋମୟ ଲେପିତମ୍ ।
ରୋପଣୀୟା ପ୍ରଯତ୍ନେନ ତତ୍ର ମେଧିଃ ଶୁଭେ ଽହନି ॥"

ବଟ, ଗମ୍ଭାରୀ, ଶିମୁଳି ବା ଅନ୍ୟ କୋଣସି କ୍ଷୀର ଯୁକ୍ତ ବୃକ୍ଷର ଶାଖା (ଏହାର ଅଭାବରେ ସ୍ତ୍ରୀ ନାମଧାରୀ କୌଣସି ବୃକ୍ଷର ଶାଖା) ମେଢି ରୂପେ ବ୍ୟବହୃତ ହୁଏ । ଧାନର ଅଗ୍ରଭାଗ ତୃଣ, ନିମ୍ବ ଓ ସର୍ଷପ ଦ୍ୱାରା ମେଢି ବନ୍ଧନ କରାଯାଏ । କେହି କେହି ପତାକା ବାନ୍ଧନ୍ତି । ଗନ୍ଧ ପୁଷ୍ପାଦି ପ୍ରଦାନ ପୂର୍ବକ ଭକ୍ତି ସହକାରେ ନିମ୍ନୋକ୍ତ ମନ୍ତ୍ର ପାଠ କରି ଅର୍ଚ୍ଚନା କରାଯାଏ ।

"ପୌଷେ ମେଧିର୍ନବାରୋପ୍ୟା କୁରାହୋ ଶ୍ରବଣେ ତଥା ।
ଶସ୍ୟ ବୃଦ୍ଧିକରୀ ମାର୍ଗେ ପୌଷେ ଶସ୍ୟ କ୍ଷୟଙ୍କରୀ ॥
କପିତ୍ଥ ବିଲ୍ୱବଂଶାନାଂ ତୃଣରାଜ୍ଞାଂ ତଥୈବଚ ।
ମେଧି କାର୍ଯ୍ୟ ପରୈର୍ନୈବ ସଦାଚ୍ଛେଦାମ୍ନନଃ ଶୁଭମ୍ ॥"

ପୌଷ ମାସ ଓ ଶ୍ରବଣ ନକ୍ଷତ୍ରରେ ମେଧି ରୋପଣ ନିଷେଧ । ମାର୍ଗଶିର ମାସରେ ମେଧି ରୋପଣ କଲେ ଶସ୍ୟର ବୃଦ୍ଧି ହୁଏ ଓ ପୌଷ ମାସରେ ଶସ୍ୟ କ୍ଷୟ ହୁଏ । କପିତ୍ଥ (କଇଥ), ବେଲ, ବାଉଁଶ, ନାରିକେଳ ଓ ତାଳବୃକ୍ଷର ମେଧି ଅଶୁଭ ଓ ସର୍ବଦୌ ବର୍ଜନୀୟ ।

***୧୦. ମାଣବସା :*** ମାର୍ଗଶିର ମାସରେ ପ୍ରତି ଗୁରୁବାର ଦିନ ଗୃହରେ ଝୋଟି ବା ଚିତା ଦେଇ ନବମାଣରେ ନବଧାନ୍ୟ ରଖି ନବ ବସ୍ତ୍ରାଦି ଆଚ୍ଛାଦନ କରନ୍ତି । ଗନ୍ଧ ପୁଷ୍ପାଦି ପ୍ରଦାନ କରି ଲକ୍ଷ୍ମୀ ରୂପେ ଆରାଧନା କରାଯାଏ । ବହୁବିଧ ପିଷ୍ଟକ ଲକ୍ଷ୍ମୀଙ୍କୁ ସମର୍ପଣ କରାଯାଏ । ମାଣବସା ଉତ୍ସବ ଉତ୍କଳର ସର୍ବତ୍ର ବହୁ ଆମୋଦ ପ୍ରମୋଦରେ ଅନୁଷ୍ଠିତ ହୁଏ । ମାଘମାସର କୌଣସି ଏକ ଗୁରୁବାର ଦିନ ଉଦ୍‌ଯାପନ କରାଯାଏ ।

***୧୧. ନବାନ୍ନ ଉତ୍ସବ :*** ଏହା ସମ୍ବଲପୁର, ସୁନ୍ଦରଗଡ, ବଲାଙ୍ଗୀର, କୋରାପୁଟ, କଳାହାଣ୍ଡି ଓ ମୟୂରଭଞ୍ଜର ସ୍ଥାନେ ସ୍ଥାନେ ବହୁଳ ଭାବେ କୌଣସି ଏକ ଶୁଭଦିନରେ ପାଳିତ ହୁଏ । ଗ୍ରାମର ସମସ୍ତ ଗୃହସ୍ଥ ପ୍ରତିବର୍ଷ ଭାଦ୍ରବ ଶୁକ୍ଳ ପକ୍ଷରେ ଗୋଟିଏ ଶୁଭଦିନ ସ୍ଥିର କରି ସେ ବର୍ଷର ନବଧାନ୍ୟର ତଣ୍ଡୁଳ ରନ୍ଧନ କରି ବା ପାୟସ କରି ଦେବତାଙ୍କୁ ସମର୍ପଣ ପୂର୍ବକ ଭୋଜନ କରନ୍ତି । ଗୀତ ବାଦ୍ୟ ପରିବେଷଣ ହୁଏ । କେତେକ ସନ୍ଧ୍ୟାବେଳେ ଆମିଷ ଭୋଜନ କରି ଶୟନ କରନ୍ତି । ଆମିଷ ଗ୍ରହଣ ନ କରିବା ବ୍ୟକ୍ତି ପରଜନ୍ମରେ ବକ ଯୋନିରେ ଜନ୍ମ ହେବ ବୋଲି ସେମାନଙ୍କ ବିଶ୍ୱାସ ।

ପରିବାରର ଯଦି କେହି ବ୍ୟକ୍ତି ଦୂରରେ ଥାଏ, ତେବେ ତାଙ୍କ ନିକଟକୁ ନୂତନ ତଣ୍ଡୁଳ ପ୍ରେରଣ କରାଯାଏ ଓ ନିର୍ଦ୍ଧାରିତ ଦିବସର ସୂଚନା ମଧ୍ୟ ଦିଆଯାଏ, ଯଦ୍ୱାରାକି ବିଦେଶରେ ରହି ମଧ୍ୟ କୁଟୁମ୍ବର ଯେ କୌଣସି ବ୍ୟକ୍ତି ନବାନ୍ନ ବା ନୂଆଖାଇ ଉତ୍ସବ ପାଳନ କରିପାରିବେ ।

ନବାନ୍ନ ଭକ୍ଷଣ ପରେ ପରିବାରର ବୟୋଜ୍ୟେଷ୍ଠ ବା ବୟୋଜ୍ୟେଷ୍ଠାଙ୍କୁ ପ୍ରଣାମ କରି ଆଶୀର୍ବାଦ ଗ୍ରହଣ କରନ୍ତି । ଉକ୍ତ ପ୍ରଥା ବହୁ ଦିନର ମନୋମାଳିନ୍ୟ ଅକ୍ଳେଶରେ ଦୂର କରିଥାଏ । ପରସ୍ପର ଦୁର୍ଭାବ ଭୁଲି ପ୍ରେମରଜ୍ଜୁରେ ଆବଦ୍ଧ ହୁଅନ୍ତି । ନବାନ୍ନ ଉତ୍ସବ ପୂଜ୍ୟପୂଜାର ସୂଚନା ଦିଏ । ସାଧାରଣତଃ ନବାନ୍ନ ଉତ୍ସବ ଭାଦ୍ରବ ମାସର ଋଷି ପଞ୍ଚମୀରେ ଅନୁଷ୍ଠିତ ହୋଇଥାଏ କିନ୍ତୁ ସର୍ବତ୍ର ଗୋଟିଏ ଦିନ ପାଳିତ ନ ହୋଇ ବର୍ଷର ବିଭିନ୍ନ ଶୁଭ ଦିବସରେ ପାଳିତ ହୋଇଥାଏ ।

***୧୨. ମକର ଉତ୍ସବ :*** ମାଘ ମାସର ମକର ସଂକ୍ରାନ୍ତିରେ ଏହା ଅନୁଷ୍ଠିତ ହୋଇଥାଏ । ବର୍ଷର ପ୍ରଥମ ଲବ୍ଧ ଧାନ୍ୟର ତଣ୍ଡୁଳରେ ଗୋରସ, ଇକ୍ଷୁ ଓ ପକ୍ୱ ରମ୍ଭା ଯୋଗ କରି ମକର ଚାଉଳ ପ୍ରସ୍ତୁତ କରାଯାଏ । ଦେବତାଙ୍କୁ ସମର୍ପଣ କରି ହୃଷ୍ଟ ଚିତ୍ତରେ ପ୍ରସାଦ ଭକ୍ଷଣ କରନ୍ତି । ଉକ୍ତ ଦିବସଠାରୁ ସୂର୍ଯ୍ୟଦେବ ଉତ୍ତରାୟଣ ହେବାରୁ ଶୈତ୍ୟର ଆଧିକ୍ୟ ହ୍ରାସ ହୁଏ । ଏହା ଦକ୍ଷିଣ ଭାରତରେ ପୋଙ୍ଗଲ୍ ନାମରେ ଅଭିହିତ ଓ ବର୍ଷର ଏକ ପ୍ରଧାନ ପର୍ବ । ଏହା ପାଶ୍ଚାତ୍ୟ ଗୋଷ୍ଠୀଙ୍କ ଖ୍ରୀଷ୍ଟମାସ୍ (Christmas) ପର୍ବ ପରି ଅନୁଭୂତ ହୁଏ ।

ଶ୍ରୀମନ୍ଦିରରେ ଏହା ନବାନ୍ନ ଉତ୍ସବ ରୂପେ ପାଳିତ ହୁଏ ବୋଲି କେତେକଙ୍କ ମତ । ଲକ୍ଷ୍ମୀଦେବୀ ତାଙ୍କ ପିତୃଗୃହରୁ ଆଣିଥିବା ନବ ତଣ୍ଡୁଳରେ ମକର ତଣ୍ଡୁଳ ପ୍ରସ୍ତୁତ କରି ମହାପ୍ରଭୁଙ୍କୁ ସମର୍ପଣ କରାଯାଏ । ଅନ୍ୟାନ୍ୟ ପାର୍ଶ୍ୱ ଦେବଦେବୀ ଶୀତବସ୍ତ୍ର କିୟଦଂଶରେ ବର୍ଜନ କରନ୍ତି । ବଙ୍ଗଳାରେ ଅନ୍ନକୋଟ ନାମରେ ପାଳିତ ହେବା ଜଣାଯାଏ । ନବାନ୍ନ ରନ୍ଧନ କରି ମନ୍ଦିର ଭଳି ଦେଉଳିଆ କରି ସଜାଇ ରଖନ୍ତି ଓ ସେଥିରେ ମୂର୍ତ୍ତି ଅଙ୍କି ପୂଜନ କରନ୍ତି । ଚତୁର୍ଦ୍ଦିଗରେ ସଂକୀର୍ତ୍ତନ ଅନୁଷ୍ଠିତ ହୁଏ ।

***୧୩. ବକୁଳ ଅମାବାସ୍ୟା :*** ଏହା ପୌଷ ମାସର ଅମାବାସ୍ୟା ଦିନ ଅନୁଷ୍ଠିତ ହୋଇଥାଏ । ଦେବତାଙ୍କୁ ପ୍ରଥମ ଆମ୍ବବକୁଳ ପ୍ରଦାନ କରାଯାଏ ।

"ଆମ୍ବ ବଉଳ ରଙ୍ଗ ଡାଳ ।
ହୃଦେ ଲମ୍ବାଇ ବନମାଳ ॥"

(ଶ୍ରୀମଦ୍ ଭାଗବତ)

ଶ୍ରୀମନ୍ଦିରରେ ଉକ୍ତ ଦିବସର ଆଳତି ଅବକାଶ ପରିସମାପ୍ତି ପରେ ଶ୍ରୀଜିଉ ବେଶ ହୁଅନ୍ତି । ଆମ୍ବମାଳ ଲାଗି ହୁଏ । ବଲ୍ଲଭ ସରି ସକାଳ ଧୂପ ଉଠିବା ସମୟରେ ରୋଷରୁ ବକୁଳ–ଗଇଁଠା ବାଟ ଛାମୁକୁ ଆସେ । ମୁଦିରସ୍ତେ ପ୍ରସାଦ ଲାଗି କରିବା ପରେ ପଣ୍ଡା ଷୋଡଶ ଉପଚାରରେ ଭୋଗ କରନ୍ତି । ଟେରା ଫିଟି ଆଳତି ସରିବା ପରେ ଚାଟ ମଧ୍ୟରେ ରହି ପଣ୍ଡା, ପତି ଓ ମୁଦିରସ୍ତେ ତିନି ବାଡରେ ବନ୍ଦାପନା କରନ୍ତି । ଦକ୍ଷିଣ ଗୃହରୁ ଶ୍ରୀ ନାରାୟଣଙ୍କୁ ରତ୍ନ ସିଂହାସନରେ ବିଜେ କରାଯାଏ । ଶ୍ରୀଜଗନ୍ନାଥଙ୍କଠାରୁ ଆମ୍ବମାଳ ପାଇ ଶ୍ରୀନାରାୟଣ ଝୁଲଣ ମଣ୍ଡପ ସମ୍ମୁଖରେ ଥିବା ପଲ୍ୟଙ୍କରେ ବିଜେ ହୋଇ ସାଗର ବିଜେ ହୁଅନ୍ତି ।

ଉକ୍ତ ଦିବସରେ କେତେକ ପରସ୍ପରକୁ ଆମ୍ବ ବକୁଳ ପ୍ରଦାନ କରି ବଉଳ ବସି ବନ୍ଧୁତା ସୂତ୍ରରେ ଆବଦ୍ଧ ହୁଅନ୍ତି ।

***୧୪. ପୁଷ୍ୟା ଯାତ୍ରା :*** ପୌଷ ମାସରେ, ଧାନ୍ୟଚ୍ଛେଦନ ପୂର୍ବରୁ ପରିବାରର ସମସ୍ତେ ଶୁଭଦିନ ଓ ଶୁଭ ନକ୍ଷତ୍ର ସ୍ଥିର କରି କ୍ଷେତ୍ର (ଜମି) ନିକଟକୁ ଯାତ୍ରା କରନ୍ତି । ଏହା ପୁଷ୍ୟା ଯାତ୍ରା ରୂପେ ଲୋକ ବିଦିତ ।

"ଅଖଣ୍ଡିତେ ତତୋ ଧାନ୍ୟେ ପୌଷେ ମାସି ଶୁଭଦିନେ ।
ପୁଷ୍ୟା ଯାତ୍ରାଂ ଜନାଃ କୁର୍ଯ୍ୟୁରନ୍ୟୋନ୍ୟ କ୍ଷେତ୍ର ସନ୍ନିଧୌ ॥"

ପଲାଉ, ଦଧି, ଘୃତ ଓ ସୁମିଷ୍ଟ ପିଷ୍ଟକାଦି କଦଳୀ ପତ୍ରରେ କ୍ଷେତ୍ରରେ ଭୋଜନ କରାଯାଏ । ଭୋଜନାନ୍ତେ ଚନ୍ଦନ ଓ କୁଙ୍କୁମ ପ୍ରଭୃତି ସୁଗନ୍ଧ ଦ୍ରବ୍ୟ ପରସ୍ପର ଅଙ୍ଗରେ ଲେପନ କରନ୍ତି । ସୁବାସିତ ପାନ ବ୍ୟବହାର କରନ୍ତି । ନବବସ୍ତ୍ର ପରିଧାନ ପୂର୍ବକ ପୁଷ୍ପମାଲ୍ୟ ଓ ପୁଷ୍ପାଭରଣ କରି ଶଚୀପତି ଇନ୍ଦ୍ରଦେବଙ୍କୁ ଭକ୍ତିପୂର୍ଣ୍ଣ ପ୍ରଣାମ ଜଣାନ୍ତି । ଗୀତ, ବାଦ୍ୟ ଓ ନୃତ୍ୟରେ ଯାତ୍ରା ସମ୍ପାଦନ କରାଯାଏ । ହର୍ଷ ଚିତ୍ତରେ କ୍ଷେତର ନିକଟରେ ନିମ୍ନୋକ୍ତ ମନ୍ତ୍ରପାଠ କରାଯାଏ ।

"କ୍ଷେତ୍ରେ ଚାଖଣ୍ଡିତେ ଧାନ୍ୟେ ତବ ଦେବ ପ୍ରସାଦତେ ।
ପୁଷ୍ୟାନ୍ତୁ ମିଳିତାଃ ସର୍ବେ ଶସ୍ୟାନି ଶୁଭକାରକାଃ ॥
ମନସା କର୍ମଣା ବାଚା ଯେ ଚାସ୍ମାକଂ ବିରୋଧିନଃ ।
ତେ ସର୍ବେ ପରଶମଂ ଯାନ୍ତୁ ପୁଷ୍ୟା–ଯାତ୍ରା–ପ୍ରସାଦତଃ ॥
ଧାନ୍ୟ ବୃଦ୍ଧିର୍ପଶୋବୃଦ୍ଧି ପ୍ରବୃଦ୍ଧି ପୁତ୍ର ଦାରୟୋଃ ।
ରାଜ ସମ୍ମାନ ବୃଦ୍ଧିଶ୍ଚ ଗବାଂ ବୃଦ୍ଧିସ୍ତଥୈବଚ ॥
ମନ୍ତ୍ର ଶାସନ ବୃଦ୍ଧିଶ୍ଚ ଲକ୍ଷ୍ମୀ ବୃଦ୍ଧିରନିଶମ୍ ।
ଅସ୍ମାକମସ୍ତୁ ସତତଂ ଯାବଦ୍ ପୂର୍ଣ୍ଣୋବତ୍ସର ॥"

ମନ, କର୍ମ ଓ ବଚନ ବିରୋଧୀ ବ୍ୟକ୍ତିମାନଙ୍କ ପ୍ରଶମନ ପାଇଁ ଦେବତାଙ୍କ ନିକଟରେ ପ୍ରାର୍ଥନା କରାଯାଏ । ଧନ, ଧାନ୍ୟ, ପଶୁ, ରାଜ ସମ୍ମାନ, ଗୋ ସମ୍ପଦ, ଦାରା, ପୁତ୍ରପୌତ୍ରାଦିଙ୍କ ମଙ୍ଗଳ କାମନା କରାଯାଏ । ବର୍ଷ ସାରା ଲକ୍ଷ୍ମୀ ବରଦା ହେବା ପାଇଁ କ୍ଷେତ୍ରପତି ପ୍ରାର୍ଥନା କରିଥାଆନ୍ତି । ଉତ୍ସବାନ୍ତେ ହୃଷ୍ଟ ଚିତ୍ତରେ ଗୃହାଭିମୁଖେ ପ୍ରତ୍ୟାବର୍ତ୍ତନ କରନ୍ତି । ସେଦିନ ପୁନର୍ବାର ଆହାର କରିବାକୁ ହୁଏ ନାହିଁ । ଶାସ୍ତ୍ର ମତରେ ଯେ ଧନ ମଦରେ ଗର୍ବିତ ହୋଇ ପୁଷ୍ୟଯାତ୍ରା ଅନୁଷ୍ଠାନ କରେ ନାହିଁ, ସେ ବର୍ଷସାରା ସୁଖ ସମ୍ପଦରୁ ବଞ୍ଚିତ ହୁଏ । ସୁନ୍ଦରଗଡ, ସମ୍ବଲପୁର ଓ ବଲାଙ୍ଗୀର ଜିଲ୍ଲାର ଲୋକମାନେ ପୁଷ୍ୟଯାତ୍ରା ପାଳନ କରନ୍ତି । ଏହା ପୁଷପୁନି ନାମରେ ପରିଚିତ । ପୌଷ ପୂର୍ଣ୍ଣମୀ ଦିନ ଶ୍ରୀମନ୍ଦିରରେ ଶ୍ରୀଜଗନ୍ନାଥଙ୍କ ପୁଷ୍ୟାଭିଷେକ ଉତ୍ସବ ମହାସମାରୋହରେ ପାଳନ କରାଯାଏ ।

**୧୫. ଦୋଳଯାତ୍ରା :** ଗୋ–ଗୋଷ୍ଠରେ ଦୋଳରେ ନାନାବିଧ ଉତ୍ସବ ପାଳିତ ହୁଏ । ଗାଈଗୋରୁଙ୍କୁ ଚୂଆ ହଳଦିରେ ଭୂଷିତ କରାଯାଏ । କୁଙ୍କୁମ, ଚନ୍ଦନ ଓ ପୁଷ୍ପମାଲ୍ୟରେ ବିଭୂଷିତ କରି ଫଳ, ପୁଷ୍ପ ଓ ପିଷ୍ଟକାଦି ପ୍ରଦାନ କରନ୍ତି । ନାନାବିଧ ବାଦ୍ୟ ଯନ୍ତ୍ରରେ ଗୋଷ୍ଠ ମୁଖରିତ ହୁଏ । ଗୋପାଳଗଣ ନବବସ୍ତ୍ର ପରିଧାନ କରି ଲଉଡି ଖେଳନ୍ତି ।

ଦୋଳଯାତ୍ରାଠାରୁ ନୂତନ ଅନ୍ନର ଅନ୍ବେଷଣ କରିବାକୁ ପଡେ । ନୂତନ ପଞ୍ଜିକା ଓ ନୂତନ ବର୍ଷର ସୂତ୍ରପାତ ହୁଏ ।

"ଦୋଳଯାଏ ଭାତ ।
ବିଭାଯାଏ ପାତ ।" (ପ୍ରବଚନ)

ଦୋଳିଖେଳ ବହୁ ପରିମାଣରେ ଦେଖାଯାଏ ।

"ଫଗୁଣ ମାସରେ ଦୋଳଗୋବିନ୍ଦେ ।
ଦୋଳି ଖେଳୁଥାନ୍ତି ପରମାନନ୍ଦେ, ମୋ ଭାଇ ହେ ।"
(ଗୋପାଳ ବାରମାସୀ ଗୀତ)

ପୁନଶ୍ଚ

"ଗମ୍ଭୀର ନିଶୀଥେ ବନଲତା କୁଞ୍ଜେ,
ଦୋଳି ଖେଳେ ରତ ବନ ଅଙ୍ଗନା ।"
(ନନ୍ଦ କିଶୋର)

ଉତ୍କଳର ସମସ୍ତ ପର୍ବପର୍ବାଣୀ କୃଷି ଉପରେ ପ୍ରତିଷ୍ଠିତ । ଭଗବାନ ବଳରାମ ହଳ ଲଙ୍ଗଳକୁ ଆୟୁଧ ରୂପେ ଧାରଣ କରି ଓ ଭଗବତୀ ସୀତା ଲଙ୍ଗଳ ମୁନରେ କ୍ଷେତ୍ରରୁ ବହିର୍ଗତ ହୋଇ କୃଷିର ମର୍ଯ୍ୟାଦା ପ୍ରଦର୍ଶନ କରିଛନ୍ତି । ବାସ୍ତବିକ ପ୍ରତ୍ୟେକ ଶରୀରଧାରୀ ଅନ୍ନର ବୈଶିଷ୍ଟ୍ୟ ଅନୁଭବ କରିଥାଆନ୍ତି । ଅନ୍ନ ହିଁ ପ୍ରାଣ । ଅନ୍ନ ହିଁ ବଳ । କୃଷି ହିଁ ପରମ ଅବଲମ୍ବନ । ଦେବ, ଦାନବ, ମାନବ ସମସ୍ତେ ଅନ୍ନାଧୀନ ।

"ଅନ୍ନଂ ପ୍ରାଣା ବଳଂ ଚାନ୍ନମନ୍ନଂ ସର୍ବାର୍ଥ ସାଧକଂ ।
ଦେବାସୁର ମନୁଷ୍ୟାଶ୍ଚ ସର୍ବେ ଚାନ୍ନୋପଜୀବିନଃ ॥
ଅନ୍ନନ୍ତୁ ଧାନ୍ୟ ସମ୍ଭୂତଂ ଧାନ୍ୟାଂ କୃଷ୍ୟାବିନା ନଚ ।
ତସ୍ମାତ୍ ସର୍ବଂ ପରିତ୍ୟଜ୍ୟ କୃଷିଂ ଯତ୍ନେନ କାରୟେତ୍ ॥
କୃଷିର୍ଧନ୍ୟା କୃଷିର୍ମେଧ୍ୟା ଜନ୍ତୁନାଂ ଜୀବନଂ କୃଷିଃ ।"

(ଉପରୋକ୍ତ ପ୍ରବନ୍ଧ କୃଷି ସମ୍ବନ୍ଧୀୟ ପ୍ରାଚୀନ ପ୍ରାମାଣିକ ଶାସ୍ତ୍ର ଉପରେ ଆଧାରିତ ।)

ସମ୍ପାଦକ, 'ମହାପ୍ରଭୁ',
ବୃନ୍ଦାବନ ଧାମ,
ଲୋକନାଥ ରୋଡ୍, ପୁରୀ–୭୫୨୦୦୧ ।

# ପରମ୍ପୋକ ଜମି ବନ୍ଦୋବସ୍ତ କରାଯିବ

ଗଞ୍ଜାମ ଓ କୋରାପୁଟ ଜିଲ୍ଲାରେ ସ୍ୱାଧୀନତାର ପୂର୍ବ ସମୟରେ ହଜାର ହଜାର ଏକର ଘରବାଡି ଓ ଚାଷଜମି 'ପରମ୍ପୋକ' ଭାବରେ ରଖାଯାଇଥିବା ହେତୁ ବିନା ରାଜସ୍ୱରେ ଭୋଗ ଦଖଲ କରୁଥିବା ଲୋକମାନଙ୍କୁ ସେ ଜମିର ସତ୍ତ୍ୱାଧିକାର ଦେବା ସକାଶେ ସ୍ୱତନ୍ତ୍ର ଆଇନ ପ୍ରଣୟନ କରାଯିବ ବୋଲି ରାଜସ୍ୱ ମନ୍ତ୍ରୀ ଶ୍ରୀ ଭାଗବତ ପ୍ରସାଦ ମହାନ୍ତି ମତବ୍ୟକ୍ତ କରିଛନ୍ତି ।

ବ୍ରହ୍ମପୁରଠାରେ ଡିସେମ୍ବର ୩୦ ତାରିଖରେ ରାଜସ୍ୱ କମିଶନର, ଗଞ୍ଜାମ, କୋରାପୁଟ, କଳାହାଣ୍ଡି, ଫୁଲବାଣୀ ଜିଲ୍ଲାର ଜିଲ୍ଲାପାଳ, ତହସିଲଦାର ଓ ବି.ଡି.ଓ.ମାନଙ୍କର ଏକ ବୈଠକରେ ରାଜସ୍ୱ ମନ୍ତ୍ରୀ ଶ୍ରୀ ମହାନ୍ତି ଅଧ୍ୟକ୍ଷତା କରି ରାଜସ୍ୱ ପ୍ରଶାସନର ଦକ୍ଷତା ବୃଦ୍ଧି ସମ୍ପର୍କରେ ଆଲୋଚନା କରିଥିଲେ । ଏହି ବୈଠକରେ ମାଡ୍ରାସ୍ ପ୍ରେସିଡେନ୍ସି ସମୟର ଭୂ–ଆଇନ ବଳରେ ଗଞ୍ଜାମ ଓ କୋରାପୁଟ, ଦୁଇଜିଲ୍ଲାରେ ପରମ୍ପୋକ ଜମିର ଲୋକମାନଙ୍କ ପାଇଁ ବନ୍ଦୋବସ୍ତ କାର୍ଯ୍ୟକ୍ରମ ହାତକୁ ନେବା ସକାଶେ ନିଷ୍ପତ୍ତି ନିଆଯାଇଥିଲା । ଦଖଲକାରୀଙ୍କ ନାମରେ ବନ୍ଦୋବସ୍ତ କରାଗଲେ, ସେମାନେ ଉକ୍ତ ଜମିର ସତ୍ତ୍ୱାଧିକାର ପାଇବା ସଙ୍ଗେ ସଙ୍ଗେ ସରକାର ବାର୍ଷିକ ଦୁଇକୋଟି ଟଙ୍କା ରାଜସ୍ୱ ପାଇବେ ବୋଲି ହିସାବ କରାଯାଇଛି ।

# ଚାଷ ନାହିଁ ତ ବାସ ନାହିଁ

ଶ୍ରୀ ଉପେନ୍ଦ୍ରନାଥ ହୋତା

ଆମକୁ ଯଦି ପଚରାଯାଏ, ତୁମର ପିତା କେତେ ଜଣ ? ତେବେ ଆମେ କହିବା ଜଣେ । କିନ୍ତୁ କେହି ଯଦି ପଚାରନ୍ତି, ତୁମର ମା' କେତେ ? ଆମେ ଏଥିରେ ଆଶ୍ଚର୍ଯ୍ୟ ହୋଇ କହିଥାଉଁ ବାପା ଗୋଟିଏ ତ ମା' ଗୋଟିଏ, ପୁଣି ଏକାଧିକ ମା' କିପରି ସମ୍ଭବ ? ଶାସ୍ତ୍ର ପାଠକଲେ ଆମେ ବୁଝିପାରିବା ଯେ ଆମର ଏକାଧିକ ମା' ଅଛନ୍ତି । ଜନ୍ମଦାତ୍ରୀ ମା'ଙ୍କୁ ତ ସହଜେ ଆମେ ମା' ବୋଲି କହିଥାଉ କିନ୍ତୁ ଜନ୍ମମାଟି ବା ଧରିତ୍ରୀ ଆମର ଏକ ମା' । ସେଥିପାଇଁ ତାଙ୍କୁ ବସୁମାତା କୁହାଯାଏ । ସେହିପରି ଗୋମାତା, ଲକ୍ଷ୍ମୀମାତା, ଗଙ୍ଗାମାତା, ଗାୟତ୍ରୀମାତା ଓ ଦୁର୍ଗାମାତା ଇତ୍ୟାଦି କୁହାଯାଏ । ଆମ କର୍ମକାଣ୍ଡରେ ମାତୃକା ଶବ୍ଦର ବହୁଳ ବ୍ୟବହାର ଦେଖିବାକୁ ମିଳେ । ଅଷ୍ଟମାତୃକା, ବର୍ଣ୍ଣମାତୃକା, ସପ୍ତମାତୃକା ଇତ୍ୟାଦି । ଜନ୍ମଦାତ୍ରୀ ମା' ଆମକୁ ଜନ୍ମ ଦେବା ମାତ୍ରେ ଆମେ ଭୂମିଷ୍ଠ ହେଉ । ବସୁମାତା ଆମକୁ ଧାରଣ କରେ । ସେହି ବସୁମାତା ବା ଧରିତ୍ରୀ ହିଁ ଆମର ଜନ୍ମମାଟି ବା ମାତୃଭୂମି । ସେହି ହିଁ ପାଳନପୋଷଣକାରିଣୀ । ବିଶ୍ୱବାସୀ ପ୍ରତ୍ୟେକେ ସେହି ମାଟି ମା'ର ସନ୍ତାନ । ପ୍ରତ୍ୟେକେ ଭାଇ, ବନ୍ଧୁ, କୁଟୁମ୍ବ । ତେଣୁ କାହାରି ପ୍ରତି କାହାରି ହିଂସାଦ୍ୱେଷଭାବ ପୋଷଣ କରିବା ଅବକାଶ ନାହିଁ । ବେଦମନ୍ତ୍ରରେ ଏଥିପାଇଁ କୁହାଯାଇଛି "ପୃଥିବୀ ମାହିଂସୀ", ସ୍ନେହ ମମତାର ଫାଶରେ ଆମେ ପ୍ରତ୍ୟେକେ ଆବଦ୍ଧ ହୋଇଥିବାରୁ ଓ ଅହିଂସା ଆମର ପରମ ଧର୍ମ ହୋଇଥିବାରୁ କୌଣସି ଜୀବକୁ ମଧ୍ୟ ଆମେ ହିଂସା କରୁନାହିଁ । ଆମ ଦର୍ଶନ ଶାସ୍ତ୍ର ଅନୁସାରେ ଆମ ମାତୃଭୂମିର କୌଣସି ସୀମା ସରହଦ ନାହିଁ, ବନ୍ଧବାଡ ନାହିଁ, ଆମର ଏହି ଜନ୍ମମାଟି ସୁଜଳା, ସୁଫଳା ଓ ଶସ୍ୟ ଶ୍ୟାମଳା, ଅତୀତରେ ଚକ୍ରବର୍ତ୍ତୀ ମହାରାଜା ଅମ୍ବରୀଷ ଆଦି ସପ୍ତଦ୍ୱୀପା ମହୀର ଶାସନଭାର ଗ୍ରହଣ କରି ପ୍ରଜାମାନଙ୍କୁ ପୁତ୍ରବତ୍ ପାଳନ କରୁଥିବା କଥା ଆମେ ପୁରାଣରୁ ପାଇଥାଉ । ପୁନଶ୍ଚ ଆଦି ଶଙ୍କରାଚାର୍ଯ୍ୟଙ୍କ ମତ ଅନୁସାରେ :

"ମାତା ମେ ପାର୍ବତୀ ଦେବୀ ପିତା ଦେବୋମହେଶ୍ୱରଃ ।
ବାନ୍ଧବାଃ ହରିଭକ୍ତାଶ୍ଚ ସ୍ୱଦେଶୋ ଭୁବନତ୍ରୟମ୍ ।"

ଏହି ଆଦର୍ଶରେ ଅନୁପ୍ରାଣିତ ହୋଇ ଯେଉଁ ବିଶ୍ୱବାସୀ ଦିନେ ପ୍ରତ୍ୟେକଙ୍କୁ ଈଶ୍ୱରଙ୍କ ସନ୍ତାନ ବୋଲି ଜ୍ଞାନ କରୁଥିଲେ ଓ ଭାଇବନ୍ଧୁ ମନେ କରି ପ୍ରତ୍ୟେକଙ୍କୁ ଆପଣାର କରିପାରୁଥିଲେ, ସେହିମାନଙ୍କ ପାଇଁ ତ୍ରିଭୁବନ ଥିଲା ସ୍ୱଦେଶ  ବେଦରେ ଏଥିପାଇଁ କୁହାଯାଇଛି :

"ଓଁ ସହନା ବବତୁ, ସହନୌ ଭୁନକ୍ତୁ,
ସହବୀର୍ଯ୍ୟଂ କରବାବହୈ ।
ତେଜସ୍ୱି ନାବଧିତମସ୍ତୁ, ମା ବିଦ୍ୱିଷାବହୈ ।"

ଏହା ଥିଲା ଗୁରୁ ଶିଷ୍ୟ, ପିତା ପୁତ୍ର ଓ ବିଶ୍ୱଭ୍ରାତୃତ୍ୱ ସମ୍ବନ୍ଧୀୟ ଉପଦେଶ । ପୁନଶ୍ଚ ଦ୍ୱାପର ଯୁଗରେ ଶ୍ରୀକୃଷ୍ଣ, ବଳରାମ ଓ ଗୋପ–ଗୋପୀମାନଙ୍କ ଆଦର୍ଶକୁ ବିଚାରକୁ ନେଲେ ଜଣାଯାଏ, ଗୋରକ୍ଷା, କୃଷି ଓ ବାଣିଜ୍ୟର ବିକାଶ ହେତୁ ସେ ଯୁଗ ଥିଲା ଆଦର୍ଶ ସ୍ଥାନୀୟ । ମୁଖ୍ୟତଃ ସେ ଯୁଗରେ ଗୋସେବା, କୃଷି, ବାଣିଜ୍ୟ ଓ ବିପ୍ର ସେବା ଥିଲା ଜନସାଧାରଣଙ୍କର ପ୍ରଧାନ କର୍ମ । ତେଣୁ ଶାସ୍ତ୍ରରେ କୁହାଯାଇଛି :

"ଗୋ ବ୍ରାହ୍ମଣ ହିତାୟ ଚ ଜଗଦ୍ଧିତାୟ......।"

ଗୋପାଳ ତାପନୀ ଉପନିଷଦରେ କୁହାଯାଇଛି :

"କୃଷିର୍ଭୂବାଚକଃ ଶବ୍ଦୋ 'ନ'ଶ୍ଚ ନିବୃତ୍ତିକାରକଃ ।
ତୟୋରୈକ୍ୟଂ ପରଂବ୍ରହ୍ମ କୃଷ୍ଣଇତ୍ୟଭିଧୀୟତେ ।।"

ଅର୍ଥାତ୍ 'କୃଷି' ଶବ୍ଦଟି ଭୂମିବାଚକ ଓ 'ନ' ଆନନ୍ଦବାଚକ । ଏ ଉଭୟ ଶବ୍ଦ ଏକତ୍ର ଯୋଗ କଲେ 'କୃଷି' ଶବ୍ଦ ନିଷ୍ପନ୍ନ ହୁଏ । ଏହି କୃଷ୍ଣ ହିଁ ପରମ ବ୍ରହ୍ମ ଓ ଆନନ୍ଦମୟ । କୃଷିରେ ସେହିପରି ଦିବ୍ୟାନନ୍ଦ ନିହିତ ଅଛି । ଯେଉଁ ବ୍ୟକ୍ତି କୃଷି କର୍ମର ଯତ୍ନ ନ ନିଏ, ସେ ଅକର୍ମୀ :

"ଅକର୍ମ ଭୂମି ନିନ୍ଦନ୍ତି ଚୋର ନିନ୍ଦନ୍ତି ଚନ୍ଦ୍ରମା ।
ରସିକା ପୁରୁ ନିନ୍ଦନ୍ତି ଜଳ ନିନ୍ଦନ୍ତି ରୋହିଣୀ ।"

କୃଷକ ହେଉଛି ଆମ ଜାତିର ମେରୁଦଣ୍ଡ । ସେ ଚରାଚର ପ୍ରାଣୀଙ୍କର ଅନ୍ନସଂସ୍ଥାନ କର୍ତ୍ତା । ଏଥିପାଇଁ ପ୍ରବାଦ ଅଛି : "ଚଷା ଲକ୍ଷେ ଜୀବ ପୋଷା ।" କୃଷି କର୍ମ ବିନା ଶିଳ୍ପ, ବାଣିଜ୍ୟ ବ୍ୟବସାୟ ଆଦି ତିଷ୍ଠି ରହିବା ଅସମ୍ଭବ । କଥାରେ ଅଛି,

"ଜଳ ବିହୁନେ ହଂସ ହାନି,
ଯୋଗ ସାଧିବ କାହା ସେନି ?"

ଏ ଯୁଗରେ ବେକାର ସମସ୍ୟାର ସମାଧାନ ପାଇଁ କୃଷି, ଗୋରକ୍ଷା ବା ଗୋପାଳନ ଓ ବ୍ୟବସାୟ ପ୍ରଧାନ କର୍ମ ପନ୍ଥା । କାରଣ ଗ୍ରାମ୍ୟ ଜୀବନଯାପନରେ ଯେତେ ସହଯୋଗିତା, କର୍ମତତ୍ପରତା ଓ ଉତ୍ସାହ ରହିଛି, ସହରର କୋଳାହଳମୟ ପରିବେଶରେ ଜୀବନଯାପନ ସେତେ ଆନନ୍ଦଦାୟକ ନୁହେଁ । ସହରବାସୀ ଚନ୍ଦ୍ରର ଶୀତଳ ଜ୍ୟୋତ୍ସ୍ନା ଉପଭୋଗ କରି ପାରୁ ନାହାନ୍ତି, କୋକିଳର କୂଜନ ଶୁଣି ପାରୁ ନାହାନ୍ତି, ଝରଣାର କଳରବ ତାଙ୍କର ଶ୍ରୁତିଗୋଚର ହେଉନାହିଁ କିମ୍ବା ପ୍ରାକୃତିକ ଶୋଭା ସମ୍ଭାର ଉପଭୋଗ କରି ପାରୁ ନାହାନ୍ତି । ଆଜି ଯେଉଁ ବ୍ୟକ୍ତି ସହରର ସୋଣତ ନାଗରିକ ବୋଲି ନିଜକୁ ଗୌରବାନ୍ୱିତ ମନେ କରୁଛନ୍ତି, ସେ ଦିନେ କ୍ଷୁଦ୍ର ପଲ୍ଲୀରେ ଜନ୍ମଗ୍ରହଣ କରିଥିଲେ । ପଲ୍ଲୀର ଦେବାଳୟକୁ ଯାଉଥିଲେ, ତାଙ୍କ ପରିବାର ଲୋକଙ୍କୁ ଦୂର ବିଦେଶରେ ରହି ମାନସିକ ଯନ୍ତ୍ରଣା ଭୋଗ କରୁଥିବାର ଦେଖି ଗାଁ ମାଟି ଆଜି ଝୁରି ହେଉଛି :

"ମଧୁବାତା ଋତାୟତେ ମଧୁ କ୍ଷରନ୍ତି ସିନ୍ଧବଃ,
ମାଧ୍ୱୀର୍ନଃ ସନ୍ତ୍ୱୋଷଧୀଃ ।
ମଧୁ ନକ୍ତ ମୁତୋଷସୋ ମଧୁମତ୍ ପାର୍ଥିବଂରଜଃ ।
ମଧୁ ଦ୍ୟୌରସ୍ତୁ ନଃ ପିତା । ମଧୁମାନ୍ନୋ ବନସ୍ପତି–ର୍ମଧୁମାଁ ଅସ୍ତୁ
ସୂର୍ଯ୍ୟଃ, ମାଧ୍ୱୀର୍ଗାବୋ ଭବନ୍ତୁ ନଃ, ଶଂନୋ ମିତ୍ରଃ ଶଂବରୁଣଃ
ଶଂନେ ଭବତ୍ୱର୍ଯ୍ୟମା । ଶନଂ ନ ଇନ୍ଦ୍ରୋ ବୃହସ୍ପତିଃ
ଶଂନୋ ବିଷ୍ଣୁରୁରୁକ୍ରମଃ ।

ଆଜି ପାଉପଟିଣ, କୃତ୍ରିମ ସ୍ୱଜନ ଚାହିଁ ବସିଛନ୍ତି ସେଇ ବୈଦିକ ଝଙ୍କାରର ପ୍ରତ୍ୟାଗମନ ପଥକୁ ।

ମହର୍ଷି ପରାଶର ମଧ୍ୟ ଗାଁ ମାଟିର କୃଷକ ସମାଜ ପାଇଁ ଯେଉଁ ସବୁ ଉପଦେଶ ଦେଇ ଯାଇଛନ୍ତି, ତାହା ପ୍ରତ୍ୟେକ କୃଷକ ସର୍ବଦା ମନେ ରଖିବା ଉଚିତ । ସେ କହିଛନ୍ତି— ତୁ ମୋ କଥା ଚିତ୍ତ ସ୍ଥିର କରି ଶ୍ରବଣ କର । ପ୍ରଥମେ ଅତିଥି ସତ୍କାର ତୋର ପ୍ରଧାନ କର୍ତ୍ତବ୍ୟ । ଦେଖୁ ତୁ ଅତିଥିଙ୍କୁ ଜଗନ୍ନାଥ ଜ୍ଞାନରେ ସେବା ସତ୍କାର କରିବୁ । ବର୍ଷାର ଲକ୍ଷଣ ନିର୍ଣ୍ଣୟ କରିବା ପାଇଁ ସେ କହିଛନ୍ତି, ଶକାବ୍ଦର ଯେତେ ଅଙ୍କ ହୋଇଥିବ ସେଥିରେ ୩ ମିଶାଇବ । ଯାହା ହେବ ତାକୁ ୪ରେ ହରିବ । ଭାଗଶେଷ ଯଦି ୧ ରହେ ତେବେ ସେ ବର୍ଷର ଅଧିକାରୀ ଅବର୍ତ୍ତକ, ୨ ରହିଲେ ସମ୍ବର୍ତ୍ତକ, ୩ ରହିଲେ ପୁଷ୍କର ଓ କିଛି ନ ରହିଲେ ଦ୍ରୋଣ ଅଧିକାରୀ ବୋଲି ଜାଣିବାକୁ ହେବ । ଅବର୍ତ୍ତକ ଅଧିକାରୀ ହେଲେ ସେ ବର୍ଷ ବିକ୍ଷିପ୍ତ ଭାବରେ ଖାଁ ଖାଁ ବର୍ଷା ହୁଏ । ସମ୍ବର୍ତ୍ତକ ଅଧିକାରୀ ହେଲେ ସର୍ବତ୍ର ଉତ୍ତମ ବୃଷ୍ଟି କରାଏ ଓ ଭଲ ଫସଲ କରାଏ । ପୁଷ୍କର ଅଧିକାରୀ ହେଲେ ଶ୍ରାବଣ ମାସରେ ବି ବର୍ଷା ନ ହୋଇ ଶସ୍ୟ ହାନି ଘଟେ । ଦ୍ରୋଣ ଅଧିକାରୀ ହେଲେ ଭଲ ବୃଷ୍ଟି ହୁଏ ଓ ସର୍ବତ୍ର ଉତ୍ତମ ଫସଲ ହୁଏ । ମାତ୍ର ଅତିବୃଷ୍ଟି ହେତୁ ସମୟ ସମୟରେ ଅନେକ ଫସଲ ଧୋଇଯାଏ । କୃଷକମାନଙ୍କ ଉଦ୍ଦେଶ୍ୟରେ ପରାଶର କହିଛନ୍ତି—" ଯେଉଁ କୃଷକ ବଳଦକୁ କଷ୍ଟ ଦେଇ କୃଷି କରେ, ସେ ଉତ୍ପନ୍ନ କରୁଥିବା ଫସଲ ଭୋଜନଯୋଗ୍ୟ ନୁହେଁ । ତାହା ପିତୃ ଲୋକ ଓ ଦେବତାମାନେ ମଧ୍ୟ ଗ୍ରହଣ କରନ୍ତି ନାହିଁ । କୃଷକ ଏଥିରେ ପାପ ଅର୍ଜନ କରେ ଏବଂ ଅଶେଷ ଦୁଃଖ ପାଏ । ଏଥିପାଇଁ ଗୋସେବା ଓ ଗୋପୂଜା ସର୍ବାଦୌ କର୍ତ୍ତବ୍ୟ । ଗୋ–ସେବା କଲେ ଧନଧାନ୍ୟ ବୃଦ୍ଧି ହୁଏ ଓ ପ୍ରତ୍ୟେକ ପରିବାର ସହ କୁଶଳରେ ରହନ୍ତି । ଯେଉଁମାନେ ଗୋରୁଙ୍କୁ ଅଧିକ ଖଟାନ୍ତି ଓ ଉପଯୁକ୍ତ ଆହାର ଦିଅନ୍ତି ନାହିଁ, ସେମାନେ ଶ୍ରୀହୀନ, ଧର୍ମହୀନ ଓ ଜ୍ଞାନହୀନ ହୁଅନ୍ତି । ଯେତେ ବିଦ୍ୟା ବୁଦ୍ଧି ଥିଲେ ମଧ୍ୟ ସେମାନେ ନିର୍ବୋଧ, ଅଧର୍ମୀ ଓ ଦୁଃଖୀ । ଏମାନଙ୍କର ଇହକାଳ ଓ ପରକାଳ ନାଶ ହୁଏ । ଯେଉଁ ପ୍ରତିପତ୍ତିଶାଳୀ ବ୍ୟକ୍ତି, ଖଳ ବ୍ୟକ୍ତି ବା ବିଧର୍ମୀ ବ୍ୟକ୍ତି ଗୋରୁଙ୍କୁ କାଞ୍ଜିଅହୌଦାରେ ପକାଇ କଷ୍ଟ ଦିଅନ୍ତି ଓ ଜୋରିମାନା ଆଦି ଆଦାୟ କରନ୍ତି ସେମାନେ ମହାପାପରେ ଭାଗୀ ହୁଅନ୍ତି ।

ଭୂମି କର୍ଷଣର ନିୟମ, ହଳ ଅନୁକୂଳ, ଅକ୍ଷିମୁଠି ନେବା ନିୟମ, ଗର୍ଭଣା ସଂକ୍ରାନ୍ତି ବ୍ରତ ପାଳନର ନିୟମ ଓ ବୀଜବପନ ଆଦିର ଶୁଭାଶୁଭ "କୃଷି ପରାଶର" ଗ୍ରନ୍ଥରେ ବିସ୍ତୃତ ଭାବରେ ବର୍ଣ୍ଣନା କରିଛନ୍ତି । ଏହା ସହିତ କୃଷି କର୍ମର ବିଧି, ନିଷେଧ ଦିନ, ଶୁଭାଶୁଭ, ବିପଦ ଆପଦ, କଳାବଳଦ ଓ ଧଳାବଳଦ ଏକାଠି ଯୋଚି ହଳ କଲେ କ୍ଷତି, ଲକ୍ଷଣ ଚିହ୍ନି ବଳଦ କିଣିବାର ବିଧି, ସିଆର କାଟିବା ଓ ଓତ ପକାଇବାର ବିଧି ଏବଂ ଏ ସମସ୍ତ ବିଧି ନ ମାନି କୃଷି କଲେ, କି କି ଅମଙ୍ଗଳ ଓ କ୍ଷତି ହୁଏ, ତାହା ସଂସ୍କୃତ ଭାଷାରେ ପ୍ରାଞ୍ଜଳ ଭାବରେ ବର୍ଣ୍ଣନା କରିଛନ୍ତି । ଈଶ, ଯୁଆଳି ଆଦି ହଠାତ୍ ଭାଙ୍ଗିଗଲେ କି ବିପଦ ପଡେ ତାହା ମଧ୍ୟ ଏହି ଗ୍ରନ୍ଥରେ ଉଲ୍ଲେଖ ଅଛି । ବିହନ ଲକ୍ଷଣ, ଗୁହାଳ ଲକ୍ଷଣ, ପଘା ଲକ୍ଷଣ, ବିହନ ବୁଣିବା, ତେଉଣ୍ଟ ଗଛ ରୋପଣ କରିବା ବଛାବଛି କରିବା ବିଧି ଓ କେଉଁ ମାସରେ କି ଚାଷ କଲେ ଉତ୍ତମ ଶସ୍ୟ ଅମଳ ହୁଏ, ତାହାର ଯାଗଯୋଗ ଏଥିରେ ବର୍ଣ୍ଣିତ ହୋଇଛି । ଘାସ ବାଛିବା, ବାଲୁଙ୍ଗା ଓ ଧାନର କଣ୍ଡ ଚିହ୍ନି ବାଛିବାର ନିୟମ, ଜଳସେଚନ ବିଧି, ଫସଲ ନିରୋଗ ହେବାର ବିଧି, ପୋକ ଛାଡିବାର ବିଧି ଓ ମନ୍ତ୍ରପାଠ ମଧ୍ୟ ଏହି ଗ୍ରନ୍ଥରେ ଉଲ୍ଲେଖ ଅଛି ।

ଆଜିକାଲି ଅଳ୍ପ ଦିନରେ ଅମଳକ୍ଷମ ଧାନ ଚାଷ କରାଗଲାଣି ସତ, କିନ୍ତୁ ଏହା କେବଳ ଖାଦ୍ୟ ସମସ୍ୟା ସମାଧାନରେ କିଛିଟା ସାହାଯ୍ୟ କରିପାରୁଛି । ଏଥିରେ ସ୍ୱାଦ ନାହିଁ, ଖାଦ୍ୟପ୍ରାଣ ମଧ୍ୟ କମ୍ । ପ୍ରାଚୀନ କାଳରୁ ବ୍ୟବହୃତ ହୋଇ ଆସୁଥିବା ଧାନ ବିହନ ଯଥା : ସନୁଚିନା, କୁକୁଡା ଅଣ୍ଡା, କଦଳୀଆ ଚମ୍ପା, ମେଘ ଡମ୍ବରୁ, ବାସୁମତୀ, ମଇଁଷିଟିଙ୍କ, ଖକୁରା, ନାଲିମୋଟରା, ଧଳାମୋଟରା, ମାଛ କଣ୍ଟା, ବାଙ୍କା ମୁକୁଶାଳୀ, ମାଟିଅକୁତା, କଳାଜିରା, ଅଣିଶ, ଶଗଡିଆ ବଙ୍ଗା, କଣାରୁଅ, ବୁଡାମୁଣ୍ଡା, ପଦ୍ମକେଶରୀ, ଗୋପାଳଭୋଗ ଓ କଳାଛିଙ୍ଗା ପ୍ରଭୃତି ସମ୍ପୂର୍ଣ୍ଣ ଲୋପ ପାଇଯିବାକୁ ବସିଲାଣି । ସେହିସବୁ ବିହନ ପରିବର୍ତ୍ତେ ଏବେ ନମ୍ବରୀ ବିହନ ୧୦୪୧, ୧୦୦୯, ୧୦୧୪, ୧୦୩୦, ଟାଇଚୁଙ୍ଗ୍, ଏନ ଓ ଟେଣ୍ଡ଼ ଆଦି ଅଳ୍ପ ଦିନେ ଅମଳକ୍ଷମ ବିହନ ଚାଷ କରାଯାଇ ମନୁଷ୍ୟର ଖାଦ୍ୟ ସମସ୍ୟା ସମାଧାନ କରାଯାଉଛି ।

ଏବେ ଡିପ ଜମିରେ ଚାଷ ହେବା ପାଇଁ ୧୦୦ ଦିନରେ ଅମଳକ୍ଷମ ଧାନ ମଧ୍ୟରେ ରୁଦ୍ର, ଶଙ୍କର, କଳିଙ୍ଗ–୩, ପାରିଜାତ ଓ ଅନ୍ନପୂର୍ଣ୍ଣା ଆଦି ଧାନ ବିହନ ବାହାରିଛି । ଏହା ବିଆଳି ଧାନ ଭଳି ଚାଷ କରାଯାଉଛି । ଅଣ ଜଳସେଚିତ ମଝିଆଳି ଜମି ପାଇଁ ୪ ମାସରେ ଅମଳକ୍ଷମ କଳିଙ୍ଗ–୨, କୁମାର, ଦୟା, ଆଇ. ଆର୍. ୩୬ ଓ ରତ୍ନା ବିହନ ବାହାରିଛି । ଜଳସେଚିତ ମଝିଆଳି ଜମିରେ ୧୩୫ ଦିନରେ ଅମଳକ୍ଷମ ପ୍ରତାପ, ହେମ, ଜୟା, ଆଇ. ଆର୍. ୨୦ ଓ ଶକ୍ତି ନାମକ ବିହନ ବାହାରିଛି । ଖାଲ ଜମିରେ ଚାଷ ହେବା ପାଇଁ ମାସୁରୀ, ଫାଲ୍‌ଗୁନୀ, ପଙ୍କଜ ଜଗନ୍ନାଥ, ସାବିତ୍ରୀ ଓ ଉତ୍କଳପ୍ରଭା ନାମକ ବିହନ ବାହାରିଛି । ଏହି ଆଧୁନିକ ବିହନ ପୁରାତନ ଦେଶୀ ଓ ଉନ୍ନତ ବିହନ ଅପେକ୍ଷା ଶୀଘ୍ର ଅମଳ ହେଉଛି । ଯଦି ଆମ୍ଭେମାନେ ପ୍ରତ୍ୟେକେ କୃଷିର ଉନ୍ନତି କାମନା କରି ଜନ୍ମମାଟିର ପୂର୍ବ ଗୌରବ ଫେରାଇ ଆଣିବାକୁ ଚାହିଁବା, ତେବେ ଦେଶର ଅଭାବ ଅନଟନ ଦୂର ହେବ ।

ସମ୍ପାଦକ, ବିଶ୍ୱ ସଂସ୍କୃତ ପ୍ରତିଷ୍ଠାନମ୍,
ଭୁବନେଶ୍ୱର–୯ ।
Qr. No. IV–3/4, ୟୁନିଟ୍–୧

## ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ଉଦ୍‌ଘାଟିତ

କୃଷି ଓ ସମବାୟ ରାଷ୍ଟ୍ରମନ୍ତ୍ରୀ ଶ୍ରୀ କାର୍ତ୍ତିକ ପ୍ରସାଦ ତରିଆ ଜାନୁଆରୀ ୭ ତାରିଖରେ ବଲାଙ୍ଗୀର ଜିଲ୍ଲା ଲୁଣ୍ଡା ବ୍ଲକ୍ ଅନ୍ତର୍ଗତ ଜାଲୋଏ ଗ୍ରାମଠାରେ ଏକ ନୂତନ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ଆନୁଷ୍ଠାନିକ ଭାବେ ଉଦ୍‌ଘାଟନ କରିଛନ୍ତି । ବ୍ଲକ୍‌ର ମଧ୍ୟସ୍ଥଳରେ ଥିବା ଏହି ବୃହତ୍ତମ ଜାଲୋଏ ଗ୍ରାମରେ ଏକ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ପ୍ରତିଷ୍ଠା ଲାଗି ଦୀର୍ଘ ଦିନ ଧରି ଦାବୀ କରାଯାଉଥିଲା । ଏଠାରେ ଏକ ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର ପ୍ରତିଷ୍ଠା ହେବା ଫଳରେ ରକ୍ସା, ଜାଲୋଏ, କଳାପଥର ଏବଂ ମହଦା ଗ୍ରାମ ପଞ୍ଚାୟତର ଅଧିବାସୀମାନେ ବିଶେଷ ଭାବେ ଉପକୃତ ହୋଇ ପାରିବେ ।

ଏଥିପାଇଁ ଆୟୋଜିତ ଉତ୍ସବରେ ଉଦ୍‌ବୋଧନ ଦେଇ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ତରିଆ ଏ ଅଞ୍ଚଳର ଲୋକମାନଙ୍କର ବହୁଦିନର ଆକାଂକ୍ଷା ପୂରଣ ହୋଇ ପାରିଥିବାରୁ ଆନନ୍ଦ ପ୍ରକାଶ କରିବା ସଙ୍ଗେ ସଙ୍ଗେ କହିଲେ ଯେ ବିଗତ ପାଞ୍ଚବର୍ଷ ମଧ୍ୟରେ ବୀରମହାରାଜପୁର ନିର୍ବାଚନ ମଣ୍ଡଳୀରେ ମୋଟ୍ ୮ଟି ଚିକିତ୍ସା କେନ୍ଦ୍ର ସ୍ଥାପିତ ହୋଇଛି । ତନ୍ମଧ୍ୟରୁ ୪ଟି ପ୍ରାଥମିକ ସ୍ୱାସ୍ଥ୍ୟ କେନ୍ଦ୍ର, ତିନୋଟି ଆୟୁର୍ବେଦିକ ସ୍ୱାସ୍ଥ୍ୟ କେନ୍ଦ୍ର ଓ ଗୋଟିଏ ହୋମିଓପାଥିକ ସ୍ୱାସ୍ଥ୍ୟ କେନ୍ଦ୍ର ଅନ୍ତର୍ଭୁକ୍ତ । ସାର୍ବଜନୀନ ସ୍ୱାସ୍ଥ୍ୟ ସୁବିଧା ଯୋଗାଇ ଦେବା ନିମନ୍ତେ ପ୍ରତି ୨୦ ହଜାର ଲୋକଙ୍କ ପାଇଁ ଗୋଟିଏ ଲେଖାଏଁ ଚିକିତ୍ସା କେନ୍ଦ୍ର ସ୍ଥାପନ ନିମନ୍ତେ ସରକାରଙ୍କ ନିର୍ଦ୍ଧାରିତ ନୀତି ଯୋଗୁଁ ଏହା ସମ୍ଭବପର ହୋଇଥିବାର ସେ ପ୍ରକାଶ କରିଥିଲେ ।

କେବଳ ସେତିକି ନୁହେଁ, ଜଳସେଚନ, ଗମନାଗମନ ଓ ଶିକ୍ଷା ପ୍ରଭୃତି କ୍ଷେତ୍ରରେ ମଧ୍ୟ ବିଗତ ପାଞ୍ଚ ବର୍ଷ ମଧ୍ୟରେ ଏହି ଅଞ୍ଚଳ ଉଲ୍ଲେଖନୀୟ ଅଗ୍ରଗତି ହାସଲ କରିଥିବା କଥା ଶ୍ରୀ ତରିଆ ଉଲ୍ଲେଖ କରିଥିଲେ । ବିଶେଷ କରି ବୀରମହାରାଜପୁରକୁ ଏକ ସ୍ୱତନ୍ତ୍ର ସବ୍‌ଡିଭିଜନ୍‌ରେ ପରିଣତ କରିବା, ସେଠାରେ ଏକ ଉଠା ଜଳସେଚନ ସବ୍‌ଡିଭିଜନ୍ ପ୍ରତିଷ୍ଠା କରିବା ଏବଂ ବିଦ୍ୟୁତ ବିଭାଗ ସହାୟକ ଯନ୍ତ୍ରୀଙ୍କ କାର୍ଯ୍ୟାଳୟ ପ୍ରତିଷ୍ଠା କରାଯାଇଥିବାରୁ ସେ ଆନନ୍ଦ ପ୍ରକାଶ କରିଥିଲେ । ଏହା ବ୍ୟତୀତ ୧.୩୦ ଲକ୍ଷ ଟଙ୍କା ବ୍ୟୟ ଅଟକଳରେ ନିର୍ମିତ ହେବାକୁ ଥିବା ସୁରୁବାଲି ଜୋର ଉପରେ ସେତୁ, କିଶୋର ନଗର ବ୍ଲକ୍‌ର ରାୟବାହାଲ ସେତୁ । ଘୋଷର ଏବଂ ଚାରୁକଳା ଯୋର ଉପରେ ସେତୁ ନିର୍ମାଣ ଉଲ୍ଲେଖନୀୟ । ସେହିପରି ଏକ କୋଟି ଟଙ୍କା ବ୍ୟୟ ଅଟକଳରେ ପ୍ରତିଷ୍ଠା ହେବାକୁ ଯାଉଥିବା ସୁବଳୟାଠାରେ ଏକ ନୂତନ କଲେଜ ଏବଂ ବୀରମହାରାଜପୁର କଲେଜରେ ବିଜ୍ଞାନ ପାଠ୍ୟକ୍ରମ ପ୍ରବର୍ତ୍ତନ, ଖଣ୍ଡହତା, କୁମରକେଲି ଓ ବିଶିପତାଠାରେ ତିନୋଟି ନୂତନ ହାଇସ୍କୁଲ ପ୍ରତିଷ୍ଠା କରାଯାଇଥିବାରୁ ସେ ସନ୍ତୋଷ ପ୍ରକାଶ କରିଥିଲେ । ଆସନ୍ତା ଜୁନ୍ ମାସ ମଧ୍ୟରେ ହରିହର ଯୋର ମଧ୍ୟରେ ହରିହର ଯୋର ମଧ୍ୟମ ଜଳସେଚନ ଯୋଜନାରୁ ଜଳଯୋଗାଣ ବ୍ୟବସ୍ଥା କରିବା, ଡୁଲେଶ୍ୱର ଗ୍ରାମଠାରେ ହାଇଡ୍ରୋ ଇଲେକ୍ଟ୍ରି ପ୍ରୋଜେକ୍ଟ ପ୍ରତିଷ୍ଠା କରିବା ଏବଂ ଧର୍ମଶାଳା ନିକଟରେ ମହାନଦୀ ଉପରେ ସେତୁ ନିର୍ମାଣ ଲାଗି ସେ ଗୁରୁତ୍ୱ ଆରୋପ କରିଥିଲେ ।

# ପୁରପଲ୍ଲୀରେ ଭିଡ଼ିଓ

*ଡକ୍ଟର୍ ସବ୍ୟସାଚୀ ରଥ*

ଆମ ରାଜ୍ୟରେ ଫସଲ ଚାଷ, ଫଳ ଚାଷ, ମାଛ ଚାଷ, ପଶୁପାଳନ, କୁକୁଡ଼ା ପାଳନ, ଏଣ୍ଡି ଓ ରେଶମ ପୋକ ପାଳନ ଇତ୍ୟାଦିର ଉତ୍ପାଦନ ବୃଦ୍ଧି ପାଇଁ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟରେ ଶିକ୍ଷାଦାନ ସହିତ ଗବେଷଣା କରାଯାଉଛି । ଗବେଷଣା ପ୍ରସୂତ ନୂଆ ତଥ୍ୟଗୁଡ଼ିକୁ ବିଶ୍ୱବିଦ୍ୟାଳୟର ସମ୍ପ୍ରସାରଣ ଶିକ୍ଷା ସଂସ୍ଥା, ରାଜ୍ୟ ସରକାରଙ୍କର ସମ୍ପୃକ୍ତ ଗ୍ରାମ ବିକାଶ ବିଭାଗ ଓ ଅନ୍ୟାନ୍ୟ ଅନୁଷ୍ଠାନ କୃଷକମାନଙ୍କ ନିକଟକୁ ନେଇ ସେମାନେ କିପରି ଏହି ତଥ୍ୟଗୁଡ଼ିକୁ ଉପଯୋଗ କରି ଅଧିକ ଉତ୍ପାଦନ କରି ପାରିବେ, ସେଥିପାଇଁ କାର୍ଯ୍ୟ କରୁଛନ୍ତି । ରେଡ଼ିଓ, ଟେଲିଭିଜନ୍, ପତ୍ର ପତ୍ରିକା ଜରିଆରେ ମଧ୍ୟ ଏହି ତଥ୍ୟଗୁଡ଼ିକୁ କୃଷକମାନଙ୍କ ଅବଗତି ପାଇଁ ପରିବେଷଣ କରାଯାଉଛି । ଏ ସବୁ ବ୍ୟବସ୍ଥା ଫଳରେ ଅନେକ ଚାଷୀ ଉପକୃତ ହେଉଛନ୍ତି ଓ ରାଜ୍ୟର କୃଷି ଉତ୍ପାଦନ ବୃଦ୍ଧି ପାଉଛି । ମାତ୍ର, ଅଶିକ୍ଷିତ, ହରିଜନ ଓ ଆଦିବାସୀ ଚାଷୀମାନେ ଏହି ବ୍ୟବସ୍ଥାଗୁଡ଼ିକ ମାଧ୍ୟମରେ ବିଶେଷ ଉପକୃତ ହୋଇପାରୁ ନାହାନ୍ତି । କୃଷି ବିଜ୍ଞାନର ନୂଆ ତଥ୍ୟକୁ କିପରି କାର୍ଯ୍ୟକାରୀ କରାଯିବ, ତାହା ନିଜ ଆଖିରେ ନଦେଖିଲେ ଚାଷୀ କେବେହେଲେ ସଫଳତାର ସହିତ ନିଜ କ୍ଷେତ୍ରରେ ପ୍ରୟୋଗ କରି ପାରିବ ନାହିଁ । ଏଥିପାଇଁ ଅବଶ୍ୟ ଓଡ଼ିଶାରେ ଚାରିଗୋଟି କୃଷି ବିଜ୍ଞାନ କେନ୍ଦ୍ର ପ୍ରତିଷ୍ଠିତ ହେଲାଣି । ଯେଉଁଠାରେ ଚାଷୀମାନେ ବୈଜ୍ଞାନିକ ପ୍ରଣାଳୀକୁ ନିଜ ଆଖିରେ ଦେଖି ବୈଜ୍ଞାନିକମାନଙ୍କ ତତ୍ତ୍ୱାବଧାନରେ ହାତରେ କରିବାକୁ ସୁଯୋଗ ପାଉଛନ୍ତି । ମାତ୍ର ସବୁ ଚାଷୀ ଏଭଳି ସୁବିଧା ଓ ସୁଯୋଗ ପାଇବା ସମ୍ଭବ ହେଉନାହିଁ ।

ତେଣୁ ଏହି ସମସ୍ୟାର ସମାଧାନ ପାଇଁ କାନାଡ଼ାର ନିଉଫାଉଣ୍ଡଲାଣ୍ଡ୍‌ରେ ଥିବା ମେମୋରିଆଲ୍ ବିଶ୍ୱବିଦ୍ୟାଳୟର ଆର୍ଥିକ ଓ ବୈଷୟିକ ସହାୟତାରେ ଆମ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟରେ ଏକ ଭିଡ଼ିଓ ପ୍ରକଳ୍ପ ପ୍ରତିଷ୍ଠିତ ହୋଇଅଛି ।

## ଏହି ପ୍ରକଳ୍ପର ଉଦ୍ଦେଶ୍ୟ ହେଲା :

(କ) ଗବେଷଣାରୁ ଉଦ୍ଭାବିତ ନୂଆ ତଥ୍ୟଗୁଡ଼ିକର କାର୍ଯ୍ୟକାରୀ ପ୍ରଣାଳୀକୁ ଭିଡ଼ିଓ ପରଦାରେ କୃଷକମାନଙ୍କୁ ଦେଖାଇଦେବା । ମୁହଁରେ କହିବା ବା ପତ୍ର ପତ୍ରିକାରେ ଲେଖିବା ଅପେକ୍ଷା ଏହା ଅଧିକ ଫଳପ୍ରଦ ହୋଇପାରିବ । ଚାଷୀମାନେ ନିଜ ଆଖିରେ ଦେଖିଲେ ସେହି ଅନୁସାରେ ନିଜ ଜମିରେ କୃଷିକର୍ମ କରିପାରିବେ ।

(ଖ) କୃଷି କ୍ଷେତ୍ରରେ ଦେଖାଯାଉଥିବା ସମସ୍ୟାଗୁଡ଼ିକୁ ସଂଗ୍ରହ କରି ବୈଜ୍ଞାନିକମାନଙ୍କ ନିକଟରେ ପହଞ୍ଚାଇ ଦେବା । ଶୁଣିବା ଅପେକ୍ଷା ଭିଡ଼ିଓ ପରଦାରେ ସମସ୍ୟାଗୁଡ଼ିକୁ ଦେଖିଲେ ବୈଜ୍ଞାନିକମାନେ ଫଳପ୍ରଦ ପ୍ରତିକାର ବ୍ୟବସ୍ଥା କରିଥାନ୍ତି ।

(ଗ) ନୂଆ ତଥ୍ୟକୁ ଉପଯୋଗ କରି ଯେଉଁ ଚାଷୀମାନେ ସଫଳତା ହାସଲ କରିଛନ୍ତି, ସେମାନଙ୍କର ଅନୁଭୂତିକୁ ଭିଡ଼ିଓ କ୍ୟାସେଟ୍ ଜରିଆରେ ଅନ୍ୟ ଅଞ୍ଚଳର ଚାଷୀଙ୍କୁ ଦେଖାଇବା । ଏହାଦ୍ୱାରା ଚାଷୀମାନେ ସହଜରେ ବିଶ୍ୱାସ କରିବେ ଓ ଯେଉଁ ଅନୁସାରେ ଜଣେ ଚାଷୀ ଉପକୃତ ହୋଇଛନ୍ତି, ସେହି ଅନୁସାରେ ନିଜେ କରିବା ପାଇଁ ଆଗ୍ରହୀ ହେବେ ।

(ଘ) ପ୍ରୌଢ଼ ଶିକ୍ଷା, ପରିବେଶର ସୁରକ୍ଷା, ଗୃହ ବିଜ୍ଞାନ ଇତ୍ୟାଦି ବିଷୟରେ କୃଷକ ଓ କୃଷକ ରମଣୀମାନଙ୍କୁ ଶିକ୍ଷା ଦେବା । ଆମ ଓଡ଼ିଶାରେ ଶତକଡ଼ା ୬୬ ଭାଗ ଲୋକ ଅଶିକ୍ଷିତ ହୋଇଥିବାରୁ ଭିଡ଼ିଓ ଜରିଆରେ ଶିକ୍ଷାଦାନ ସହଜ ଓ ଫଳପ୍ରଦ ହୋଇପାରିବ ।

ଭିଡ଼ିଓ ଜରିଆରେ ଶିକ୍ଷାଦାନ ଏକ ସହଜ ଉପାୟ । କାରଣ ପଢ଼େଇବା ବା କହିବା ଅପେକ୍ଷା ବିଷୟବସ୍ତୁକୁ ଭିଡ଼ିଓ ପରଦାରେ ଦେଖେଇଦେଲେ ସହଜରେ ବୁଝିହୁଏ ଓ ମନେ ରହେ । ତେଣୁ ଓଡ଼ିଶାରେ କୃଷକମାନଙ୍କୁ ଆଧୁନିକ କୃଷି ପ୍ରଣାଳୀ ସମ୍ପର୍କରେ ପ୍ରଭାବିତ କରିବା ପାଇଁ ଭିଡ଼ିଓ ପ୍ରକଳ୍ପ ପ୍ରତିଷ୍ଠା କରାଯାଇଅଛି ।

## ଭିଡ଼ିଓ ପ୍ରକଳ୍ପର କାର୍ଯ୍ୟ ପ୍ରଣାଳୀ :

ଏହି ପ୍ରକଳ୍ପ ଓଡ଼ିଶା କୃଷି ଓ ବୈଷୟିକ ବିଶ୍ୱବିଦ୍ୟାଳୟର ସମ୍ପ୍ରସାରଣ ଶିକ୍ଷା ନିର୍ଦ୍ଦେଶାଳୟରେ ପ୍ରତିଷ୍ଠିତ ହୋଇଅଛି । ନିଉଫାଉଣ୍ଡଲାଣ୍ଡର ମେମୋରିଆଲ୍ ବିଶ୍ୱବିଦ୍ୟାଳୟରୁ ବିଶେଷଜ୍ଞମାନେ ଆସି ଆମର

ସମ୍ପ୍ରସାରଣ କର୍ମୀମାନଙ୍କୁ ଭିଡ଼ିଓ କ୍ୟାମେରା, ମନିଟର୍, ରେକର୍ଡର୍ ଇତ୍ୟାଦିର କାର୍ଯ୍ୟକାରିତା ସମ୍ପର୍କରେ ତାଲିମ ଦେଉଛନ୍ତି । ଏହି କର୍ମୀମାନେ ଗବେଷଣା କେନ୍ଦ୍ର, ବିଜ୍ଞାନାଗାର ଓ ଗ୍ରାମ ଗହଳକୁ ଯାଇ ଆଧୁନିକ କୃଷି ପ୍ରଣାଳୀର ବିଭିନ୍ନ ତଥ୍ୟ, ସଫଳ କାହାଣୀ, କୃଷି କ୍ଷେତ୍ରର ସମସ୍ୟାକୁ ରେକର୍ଡ କରୁଛନ୍ତି । ତାପରେ ଷ୍ଟୁଡ଼ିଓ ମଧ୍ୟରେ ସେମାନେ କ୍ୟାସେଟ୍ ପ୍ରସ୍ତୁତ କରୁଛନ୍ତି । ଏହି କ୍ୟାସେଟ୍‌ଗୁଡ଼ିକୁ ଗ୍ରାମ ଗହଳକୁ ନିଆଯାଇ କୃଷକମାନଙ୍କୁ ଦେଖାଯାଉଅଛି ।

ଗ୍ରାମାଞ୍ଚଳରେ ବିଶେଷତଃ ଆଦିବାସୀ ଅଞ୍ଚଳରେ ଭିଡ଼ିଓ କ୍ୟାସେଟ୍ ପ୍ରଦର୍ଶନ ପାଇଁ ବିଶ୍ୱବିଦ୍ୟାଳୟ ତରଫରୁ କେନ୍ଦୁଝର, ଜି: ଉଦୟଗିରି, ଶିମିଳିଗୁଡ଼ା ଓ ଚିପିଲିମାଠାରେ ବ୍ୟବହାରିକ କେନ୍ଦ୍ରମାନ ପ୍ରତିଷ୍ଠିତ ହୋଇଛି । ଏହି କେନ୍ଦ୍ରର ସମ୍ପୃକ୍ତ କର୍ମଚାରୀଙ୍କୁ ମଧ୍ୟ ଆବଶ୍ୟକୀୟ ତାଲିମ ଦିଆଯାଇଛି । ତେଣୁ ଓଡ଼ିଶାରେ କୃଷକମାନଙ୍କୁ ଏକ ନୂଆ ଦିଗରେ ସେବା କରିବା ପାଇଁ ଭିଡ଼ିଓ ପ୍ରକଳ୍ପ ତାର ଆସନ ପ୍ରତିଷ୍ଠିତ କରି ସାରିଲାଣି ।

## ଭିଡ଼ିଓର ଉପକାରିତା :

କୃଷକ ଓ କୃଷକ ରମଣୀମାନଙ୍କୁ ଆଧୁନିକ କୃଷି ପ୍ରଣାଳୀ, ପରିବେଶ, ଗୃହ ବିଜ୍ଞାନ ଇତ୍ୟାଦି ବିଷୟରେ ତାଲିମ ଦେବା ପାଇଁ ଭିଡ଼ିଓ ପ୍ରଦର୍ଶନ ଏକ ଅତ୍ୟାଧୁନିକ ମାଧ୍ୟମ । ବିଗତ ଦୁଇବର୍ଷ ମଧ୍ୟରେ ଏହାର ସଫଳତା ଓଡ଼ିଶାର ଅନେକ ଅଞ୍ଚଳରେ ପ୍ରମାଣିତ ହେଲାଣି । ସମ୍ପ୍ରସାରଣ କର୍ମୀମାନେ କୌଣସି ଏକ ଗ୍ରାମକୁ ଯାଇ କୃଷକମାନଙ୍କ କ୍ଷେତ୍ର, ସେମାନଙ୍କ ସହିତ କଥାବାର୍ତ୍ତା, ସେମାନଙ୍କ ଗୃହ, ଚାଲିଚଳନ, ପର୍ବ ପର୍ବାଣୀ, ଗୃହ ପାଳିତ ପଶୁ ଇତ୍ୟାଦିକୁ ରେକର୍ଡ କରି ପୁଣି ସେହି ସ୍ଥାନରେ ଲୋକମାନଙ୍କୁ ଦେଖାଇ ଦେଇ ପାରୁଛନ୍ତି । ଫଳରେ ନିଜ ଗ୍ରାମ, ଗୃହ, ପରିବାର ଓ ସର୍ବୋପରି ନିଜର ଚିତ୍ରକୁ ଟିଭି ପରଦାରେ ଦେଖିବା ଫଳରେ କୃଷକମାନେ ଏହା ପ୍ରତି ଆକୃଷ୍ଟ ହେଉଛନ୍ତି ।

ନିକଟ ଅତୀତରେ ଫୁଲବାଣୀ ଜିଲ୍ଲାର ପ୍ରେମଝୋଲି ଗ୍ରାମରେ ଭିଡ଼ିଓ ପ୍ରଦର୍ଶନ ପରେ ଗ୍ରାମବାସୀମାନଙ୍କୁ ସେମାନଙ୍କର ସମସ୍ୟା ସମ୍ପର୍କରେ କହିବାକୁ କୁହାଯାଇଥିଲା ଓ ଏହାକୁ ରେକର୍ଡ କରାଯାଇଥିଲା । ଅନେକ ସମସ୍ୟା ମଧ୍ୟରୁ ମହିଳାମାନେ ସେମାନଙ୍କର ପିଲାମାନଙ୍କୁ ଟୀକା ଦିଆଯାଇ ନାହିଁ ବୋଲି କହିଥିଲେ । ଭିଡ଼ିଓର ଏହି ରେକର୍ଡକୁ ଜିଲ୍ଲା ସ୍ୱାସ୍ଥ୍ୟ ଅଧିକାରୀଙ୍କୁ ଦେଖାଇ ଦେବା ଫଳରେ ସେ ଯଥାଶୀଘ୍ର ସମ୍ପୃକ୍ତ ଗ୍ରାମରେ ଟୀକା ଦିଆଯିବା ପାଇଁ ବ୍ୟବସ୍ଥା କରିଥିଲେ ।

ସେହିପରି ଅନେକ ଗ୍ରାମର ପାନୀୟ ଜଳର ଅଭାବ, ରାସ୍ତାଘାଟର ଅସୁବିଧା, ପୋକ ଓ ରୋଗ ଲାଗି ଫସଲ କ୍ଷତିକୁ ରେକର୍ଡ କରାଯାଇ ସମ୍ପୃକ୍ତ ଅଫିସରଙ୍କୁ ଦେଖାଇ ଦେବା ଫଳରେ ସେମାନେ ପରିସ୍ଥିତିର ଗୁରୁତ୍ୱକୁ ଉପଲବ୍ଧି କରି ଶୀଘ୍ର ପ୍ରତିକାର କରୁଛନ୍ତି ।

ତେଣୁ ଓଡ଼ିଶାରେ ବର୍ତ୍ତମାନ ଭିଡ଼ିଓ ପ୍ରକଳ୍ପ କୃଷକମାନଙ୍କ ଅର୍ଥନୈତିକ ଓ ସାମାଜିକ ଉନ୍ନତି ପାଇଁ କାର୍ଯ୍ୟ କରିବା ସଙ୍ଗେ ସଙ୍ଗେ ଗ୍ରାମାଞ୍ଚଳର ବିକାଶ ପାଇଁ କାର୍ଯ୍ୟ କରୁଥିବା ଅଫିସର ଓ ସେମାନଙ୍କ ମଧ୍ୟରେ ଏକ ଯୋଗସୂତ୍ର ପ୍ରତିଷ୍ଠା କରି ପାରିଲାଣି ।

ନିର୍ଦ୍ଦେଶକ,
ଭିଡ଼ିଓ ପ୍ରକଳ୍ପ,
ଓ: ୟୁ: ଏ: ଟି:, ଭୁବନେଶ୍ୱର-୩ ।





# ପୁଅ ଝିଅଙ୍କ ବିବାହ ବୟସ

ଶ୍ରୀ ବୃନ୍ଦାବନ ପଣ୍ଡା

ଆଜୀବନ ଦୁଇଟି ହୃଦୟକୁ ଏକ ପବିତ୍ର ବନ୍ଧନରେ ବାନ୍ଧି ରଖିବା ହିଁ ବିବାହ । ଏହାପରେ ନବଜାତ ଶିଶୁଟିର ଆଗମନ ଏହି ବନ୍ଧନକୁ ଆହୁରି ନିବିଡ଼ କରିଦିଏ । ପୁତ୍ର କନ୍ୟାଙ୍କର କଲ୍ୟାଣ ନିମନ୍ତେ ଆସ୍ତେ ଆସ୍ତେ ପିତା ମାତାଙ୍କର ଦାୟିତ୍ୱ ବଢ଼ିଯାଏ । ଅର୍ଥନୈତିକ ତଥା ସାମାଜିକ ପରିସ୍ଥିତିକୁ ଆଖିରେ ରଖି ପିତା ମାତା ସେମାନଙ୍କର ସନ୍ତାନ ସନ୍ତତିଙ୍କୁ ଉତ୍ତମ ରୂପେ ଗଢ଼ି ତୋଳିବାରେ ପ୍ରୟାସ କରିଥାନ୍ତି । ଏଥିପାଇଁ ସେମାନେ ଦାୟିତ୍ୱସମ୍ପନ୍ନ ହେବା ନିମନ୍ତେ ମାନସିକ ତଥା ଶାରୀରିକ ଦୃଷ୍ଟିରୁ ପରିପକ୍ୱତା ଲାଭ କରିଥିବା ସର୍ବାଦୌ ଆବଶ୍ୟକ । ଯଦି ଜଣେ ଯୁବକ କମ୍ ବୟସରେ ବିବାହ କରି ପରିବାରର ଦାୟିତ୍ୱ ତୁଲାଇବାରେ ଅସମର୍ଥ ହୁଏ, ତେବେ ସେ ନିଜ ପତ୍ନୀର ଭଲ ପାଇବା ଓ ସମ୍ମାନ ଲାଭ କରିପାରେ ନାହିଁ ଏବଂ ଆତ୍ମ ପ୍ରତ୍ୟୟ ହରାଇ ବସେ । ସେହିପରି ଜଣେ ଝିଅ ଯଦି ଅଠର ବର୍ଷ ନପୂରଣୁ ବିବାହ କରି ବସେ, ତେବେ ସେ ଗର୍ଭଧାରଣ କରିବା ନିମନ୍ତେ ଶାରୀରିକ ଏବଂ ମାନସିକ ଦୃଷ୍ଟିରୁ ପ୍ରସ୍ତୁତ ହୋଇ ନଥାଏ । ଏ ଦୁଇଟି ବିଷୟ ବିବାହ ଜୀବନ ପାଇଁ ଅତୀବ ଜରୁରୀ । ଏଥିପାଇଁ ପିତା ମାତାମାନେ ସେମାନଙ୍କର ପୁତ୍ର କନ୍ୟାଙ୍କର ବିବାହ ସ୍ଥିର କରିବା ପୂର୍ବରୁ ଗୁରୁତ୍ୱ ସହକାରେ ବିଚାର କରିବା ଉଚିତ ।

ପୂର୍ବେ ଆମ ସମାଜରେ ବାଲ୍ୟ ବିବାହ ପ୍ରଥା ପ୍ରଚଳିତ ଥିଲା । ଇତିହାସ ପୃଷ୍ଠାରୁ ବାଲ୍ୟ ବିବାହର କୁପରିଣାମ ବିଷୟରେ ଆମେ ସମସ୍ତେ ଅଳ୍ପ ବହୁତ ଜାଣିଥାଉଁ । ଅନୁସନ୍ଧାନରୁ ଜଣାଯାଇଛି ଯେ, ମା'ର ବୟସ ଯଦି କୋଡ଼ିଏ ବର୍ଷରୁ କମ୍ ହୋଇଥାଏ, ତେବେ ହଜାରକେ ଦୁଇଶହ ଶିଶୁ ପ୍ରଥମ ଜନ୍ମ ଦିନ ପାଳିତ ହେବା ପୂର୍ବରୁ ସବୁଦିନ ପାଇଁ ଆଖି ବୁଜି ଦିଅନ୍ତି । ଆମ ଦେଶ ସ୍ୱାଧୀନତା ଲାଭ କରିବା ପରଠାରୁ ସ୍ୱାସ୍ଥ୍ୟର ସୁରକ୍ଷା ଦିଗରେ ଚିକିତ୍ସାଗତ ସୁବିଧା ସୁଯୋଗ ବହୁମାତ୍ରାରେ ବୃଦ୍ଧି ପାଇଥିଲେ ମଧ୍ୟ ପୂର୍ବ ଅନୁପାତରେ ଶିଶୁ ମୃତ୍ୟୁ ହାର ଆଶାନୁରୂପ ଭାବେ ହ୍ରାସ ପାଉନାହିଁ । ମୁଖ୍ୟତଃ ଝିଅମାନେ କମ୍ ବୟସରେ ବିବାହ କରୁଥିବାରୁ ଏଭଳି ପରିସ୍ଥିତି ଉପୁଜିଥିବାର ଲକ୍ଷ୍ୟ କରାଯାଉଛି ।

ଆମ ଦେଶରେ କମ୍ ବୟସରେ ବିବାହ କରୁଥିବା ଅନେକ ଝିଅ ଗର୍ଭାବସ୍ଥାରେ ଏବଂ ପ୍ରସବ କାଳରେ ମୃତ୍ୟୁର ଶିକାର ହୋଇଥାଆନ୍ତି । ସେମାନଙ୍କର ସ୍ୱାସ୍ଥ୍ୟକୁ ବୁଝି ସେମାନେ ମାନସିକ ତଥା ଶାରୀରିକ ଦୃଷ୍ଟିରୁ ମାତୃତ୍ୱର ବୋଝ ସହିବା ପାଇଁ ସମର୍ଥ ହୋଇ ପାରନ୍ତିନି । ଏହା ସର୍ବସମ୍ମତ ଯେ ମା'ର ବୟସ କୋଡ଼ିଏରୁ ପଚିଶ ବର୍ଷ ଭିତରେ ହୋଇଥିଲେ, ସନ୍ତାନ ପ୍ରସବ କରିବା ସହଜ ଓ ନିରାପଦ ହୋଇଥାଏ । କୋଡ଼ିଏ ବର୍ଷ ବୟସ ପରେ ବିବାହ କଲେ, ସନ୍ତାନର ଜନନୀ ହେବା ଉଭୟ ମା' ଓ ନବଜାତ ଶିଶୁ ନିମନ୍ତେ ଲାଭଦାୟକ ।

ଉତ୍ତମ ପରିମଳ ବ୍ୟବସ୍ଥା, ବିଭିନ୍ନ ରୋଗ ନିୟନ୍ତ୍ରଣ ଦିଗରେ ପ୍ରତିରୋଧମୂଳକ ପଦକ୍ଷେପ, ଉତ୍ତମ ପୁଷ୍ଟିକର ଖାଦ୍ୟ ଓ ଡାକ୍ତରୀ ଚିକିତ୍ସାର ସୁବିଧା ଫଳରେ ଆମ ଦେଶରେ ମୃତ୍ୟୁ ସଂଖ୍ୟା ଆଶାତୀତ ଭାବେ ହ୍ରାସ ପାଇଛି । ବିଭିନ୍ନ ମାରାତ୍ମକ ରୋଗକୁ ଦମନ କରାଯାଇ ଥିବାରୁ ମଣିଷ ଷାଠିଏ ବର୍ଷରୁ ଅଧିକ ବଞ୍ଚିବା ସମ୍ଭବ ହୋଇଛି । ଏଥିରୁ ଜଣାଯାଉଛି ଯେ ମଣିଷ ବହୁଦିନ ପର୍ଯ୍ୟନ୍ତ ବଞ୍ଚିରହି ପାରୁଛି, କିନ୍ତୁ ଅପର ପକ୍ଷେ ଏହା ଜନସଂଖ୍ୟା ବୃଦ୍ଧିକୁ ଉତ୍ସାହିତ କରୁଛି ।

୧୯୦୧ ମସିହା ଜନଗଣନା ଅନୁସାରେ ଆମ ଦେଶର ଲୋକସଂଖ୍ୟା ଥିଲା ୨୩୮ ନିୟୁତ । ଏହାର ତିରିଶ ବର୍ଷ ମଧ୍ୟରେ ଲୋକସଂଖ୍ୟା ହେଲା ୨୭୯ ନିୟୁତ । ଏହପରି ୧୯୫୧ ମସିହା ବେଳକୁ ଲୋକସଂଖ୍ୟା ୩୬୦ ନିୟୁତରେ ଆସି ପହଞ୍ଚିଲା ଏବଂ ପରବର୍ତ୍ତୀ ତିରିଶ ବର୍ଷ ମଧ୍ୟରେ ଲୋକସଂଖ୍ୟା ହେଲା ୬୮୫ ନିୟୁତ, ଅର୍ଥାତ୍ ଶତକଡ଼ା ୯୦ ଭାଗ ବୃଦ୍ଧି ପାଇଲା । ଏହି ହାରରେ ଯଦି ଜନସଂଖ୍ୟା ବୃଦ୍ଧି ପାଏ, ତେବେ, ଚଳିତ ଶତାବ୍ଦୀ ଶେଷ ସୁଦ୍ଧା ଆମର ଲୋକସଂଖ୍ୟା ୯୦ କୋଟିରେ ଯାଇ ପହଞ୍ଚିବ । ଏଥି ସହିତ ଅନ୍ୟ ଏକ ବିଷୟ ହେଲା, ଆମର ବର୍ତ୍ତମାନ ଜନସଂଖ୍ୟାର ଶତକଡ଼ା ୧୨ ଭାଗ ୧୫ରୁ ୧୯ ବର୍ଷ ବୟସର ପୁଅ ଝିଅ ନିକଟରେ ବିବାହ ବୟସରେ ପହଞ୍ଚିବେ । ଏଥିରୁ ସହଜରେ ଅନୁମେୟ ଯେ ଏମିତି ହୁ ହୁ ହୋଇ ବଢୁଥିବା ଲୋକସଂଖ୍ୟା ଯୋଗୁଁ ଆମ ଦେଶର ଅର୍ଥନୈତିକ ପ୍ରଗତି ବ୍ୟାହତ ହେଉଛି । ଆମର ସମସ୍ତ ଉଦ୍ୟମର ସୁଫଳ ଦ୍ରୁତ ଜନସଂଖ୍ୟା ଅଭିବୃଦ୍ଧି ଯୋଗୁଁ ରୂପାୟିତ ହୋଇପାରୁ ନାହିଁ । ଏଣୁ, ଲୋକସଂଖ୍ୟା ବୃଦ୍ଧିକୁ ଯଦି ସ୍ୱେଚ୍ଛାକୃତ ଭାବେ ରୋକା ନଯାଏ, ତେବେ ଜନସାଧାରଣଙ୍କର ଜୀବନ ଧାରଣର ମାନରେ ଉନ୍ନତି ଆଶା କରିବା ବୃଥା ହେବ ।

ଆଜି ଯୁବ ସମାଜ ସମ୍ମୁଖରେ ଯେଉଁ ଆହ୍ୱାନ ଦେଖା ଦେଇଛି, ତାହିଁର ମୁକାବିଲା କରିବାକୁ ହେଲେ ବିବାହ ବୟସ, ସନ୍ତାନ ଜନ୍ମରେ ବ୍ୟବଧାନ

ରକ୍ଷା, ପୁଅ ବା ଝିଅ ହେଉ ଗୋଟିଏ ସନ୍ତାନ ଲାଭ କରିବା ଏବଂ ସର୍ବୋପରି ଦେଶର ପ୍ରଗତି ପ୍ରତି ସୁଚିନ୍ତିତ ଦୃଷ୍ଟି ଦେବାକୁ ପଡ଼ିବ । ସବୁଠାରୁ ବଡ଼ କଥା ହେଲା, ବିବାହ ବୟସ ପ୍ରତି ଦୃଢ଼ ସଙ୍କଳ୍ପ ନେବା । ଏ ଦିଗରେ ଆମ ଯୁବ ସମାଜର ବିଶେଷ ଗୁରୁ ଦାୟିତ୍ୱ ରହିଛି । ଲୋକସଂଖ୍ୟା ବୃଦ୍ଧିକୁ ରୋକିବା ନିମନ୍ତେ ବିଭିନ୍ନ ଦୃଷ୍ଟିକୋଣରୁ ବିଚାର କରି ଆମ ସରକାର ପୁଅର ବିବାହ ପାଇଁ ସର୍ବନିମ୍ନ ବୟସ ୨୧ ବର୍ଷ ଏବଂ ଝିଅର ସର୍ବନିମ୍ନ ୧୮ ବର୍ଷ ବୟସ ଧାର୍ଯ୍ୟ କରିଛନ୍ତି । ୧୯୭୮ ମସିହା ବାଲ୍ୟ ବିବାହ ନିରୋଧ ଆଇନ ଅନୁଯାୟୀ ଯଦି ଜଣେ ପୁଅକୁ ୨୧ ବର୍ଷ ଏବଂ ଝିଅକୁ ୧୮ ବର୍ଷ ବୟସ ନପୂରୁଣୁ ବିବାହ କରନ୍ତି, ତେବେ ତାହା ଧର୍ତବ୍ୟ ଅପରାଧ ରୂପେ ଗୃହୀତ ହେବ ବୋଲି ଆଇନ୍‌ରେ ବ୍ୟବସ୍ଥା ରହିଛି । କେହି ଯଦି ଉକ୍ତ ବୟସ ସୀମାଠାରୁ କମ୍ ବୟସରେ ବିବାହ କରିବା ପାଇଁ ଚୁକ୍ତି କରେ କିମ୍ବା ସମ୍ପାଦନ କରେ, ଅନୁଷ୍ଠିତ କରାଏ ଅଥବା ଏଭଳି ବିବାହ ପାଇଁ ନିର୍ଦ୍ଦେଶ ଦିଏ, ତେବେ ସେମାନେ ଏହି ବ୍ୟବସ୍ଥା ଅନୁଯାୟୀ ଦଣ୍ଡନୀୟ ହେବେ । ବିବାହ ନିମନ୍ତେ ଉଦ୍ଦିଷ୍ଟ ବୟସ ସୀମା ଉଲ୍ଲଂଘନ କରି ବିବାହ କାର୍ଯ୍ୟ ସମ୍ପାଦିତ ହେବାକୁ ଥିଲେ, ନ୍ୟାୟାଳୟ ଯେ କୌଣସି ପ୍ରସ୍ତାବିତ ବିବାହକୁ ମଧ୍ୟ ନିଷେଧ କରିପାରିବେ ।

୧୯୭୮ ମସିହା ବାଲ୍ୟ ବିବାହ ନିରୋଧ (ସଂଶୋଧିତ) ଆଇନ୍‌ରେ ଉଲ୍ଲେଖ ରହିଛି ଯେ ବିବାହ ନିମନ୍ତେ ଉଦ୍ଦିଷ୍ଟ ବୟସ ସୀମା ଅମାନ୍ୟ କରି କେହି ବିବାହ ନିମନ୍ତେ ଚୁକ୍ତି କରୁଥିଲେ କିମ୍ବା ବିବାହ ସମ୍ପାଦନ କରୁଥିଲେ ସେମାନଙ୍କ ପ୍ରତି ନିମ୍ନୋକ୍ତ ଦଣ୍ଡବିଧାନର ବ୍ୟବସ୍ଥା ରହିଛି :

(କ) ଯଦି ଜଣେ ୧୮ ବର୍ଷରୁ ଊର୍ଦ୍ଧ୍ୱ ଏବଂ ୨୧ ବର୍ଷରୁ କମ୍ ବୟସର ପୁଅ, ୧୮ ବର୍ଷ ବୟସ ପୂରି ନଥିବା ଜଣେ ଝିଅକୁ ବିବାହ କରିବା ପାଇଁ ଚୁକ୍ତି କରୁଥାଏ, ତେବେ ସେ ପୁଅକୁ ୧୫ ଦିନ ପର୍ଯ୍ୟନ୍ତ ସାଧାରଣ କାରାଦଣ୍ଡ କିମ୍ବା ୧ ହଜାର ଟଙ୍କା ଜୋରିମାନା ଅଥବା ଉଭୟ ଦଣ୍ଡରେ ଦଣ୍ଡିତ କରାଯିବ । ପୁଅର ବୟସ ୨୧ ବର୍ଷରୁ ଊର୍ଦ୍ଧ୍ୱ ହୋଇଥିଲେ, କାରାଦଣ୍ଡ ସମୟ ୩ ମାସ ପର୍ଯ୍ୟନ୍ତ ବୃଦ୍ଧି କରାଯାଇ ପାରେ ।

(ଖ) କେହି ବିବାହ କରୁଥିଲେ, ବିବାହ କାର୍ଯ୍ୟ ଅନୁଷ୍ଠିତ କରୁଥିଲେ କିମ୍ବା ବିବାହ ନିମନ୍ତେ ନିର୍ଦ୍ଦେଶ ଦେଉଥିଲେ ସମ୍ପୃକ୍ତ ବ୍ୟକ୍ତିଙ୍କୁ ୩ ମାସ ସମୟ ପର୍ଯ୍ୟନ୍ତ ସାଧାରଣ କାରାଦଣ୍ଡ ଏବଂ ଜୋରିମାନାରେ ଦଣ୍ଡିତ କରାଯିବ ।

(ଗ) ଜଣେ ନାବାଳକ ଯଦି ବାଲ୍ୟ ବିବାହ ପାଇଁ ଚୁକ୍ତି କରୁଥାଏ, ତେବେ ନାବାଳକର ପିତା ମାତା, ଅଭିଭାବକ କିମ୍ବା ନାବାଳକର ଦାୟିତ୍ୱ ଗ୍ରହଣ କରିଥିବା ଯେ କୌଣସି ବ୍ୟକ୍ତିଙ୍କୁ ୩ ମାସ ପର୍ଯ୍ୟନ୍ତ କାରାଦଣ୍ଡ ଦିଆଯାଇ ପାରିବ ଏବଂ ବିବାହ ପାଇଁ ଅନୁମତି ଦେଉଥିଲେ କିମ୍ବା ବିବାହ ବୁଝାସୁଝା କରୁଥିଲେ ଅଥବା ବିବାହ ବନ୍ଦ କରି ନପାରିଲେ ଜୋରିମାନା କରାଯିବ । ତେବେ ଅନୁରୂପ କାର୍ଯ୍ୟ ପାଇଁ କୌଣସି ମହିଳାଙ୍କୁ ଜେଲ୍‌ଦଣ୍ଡ ଦିଆଯାଇ ପାରିବ ନାହିଁ ।

ଆଜିର ଯୁବ ସମାଜ ବିବାହ ପାଇଁ ପାଦ ବଢ଼ାଇବା ପୂର୍ବରୁ ଆଇନ୍ ପ୍ରତି ସମ୍ମାନ ପ୍ରଦର୍ଶନ କରିବା ଉଚିତ । ଆଇନାନୁମୋଦିତ ବୟସରେ ବିବାହ କରିବା ଦ୍ୱାରା ନିଜ ପରିବାରର କଲ୍ୟାଣ ହେବା ସଙ୍ଗେ ସଙ୍ଗେ ଦେଶର ପ୍ରଗତି ସମ୍ଭବ ହୋଇଥାଏ । ତେଣୁ, ନିଜର ତଥା ଦେଶର ଭବିଷ୍ୟତ ପ୍ରତି ଗଭୀର ଚିନ୍ତା କରିବା ଯୁବ ସମାଜ ଓ ପିତା ମାତାଙ୍କର ମହାନ୍ ନୈତିକ କର୍ତବ୍ୟ । ସେମାନେ ନିଜ ନିଜର କର୍ତବ୍ୟ ପାଳନ ଦିଗରେ ଆଗଭର ହେବା ଉଚିତ ।

---

ଅଧ୍ୟକ୍ଷ,
ରାଜଧାନୀ ଆଇନ୍ ମହାବିଦ୍ୟାଳୟ,
ଭୁବନେଶ୍ୱର-୧ ।

## ଘରଡିହ ଓ ଚାଷଜମି ଯୋଗାଣ

କଟକ ଜିଲ୍ଲାର ଜମୁଦୀପ ମହାକାଳପଡା ଅଞ୍ଚଳରେ ୩୦ରୁ ୪୦ ବର୍ଷ ଧରି ବସବାସ କରି ରହୁଥିବା ଭୂମିହୀନ ପରିବାରଙ୍କୁ ଘରଡିହ ଜମି ଯୋଗାଇ ଦେବା ପାଇଁ ସରକାର ନୀତିଗତ ଭାବେ ନିଷ୍ପତ୍ତି କରିଛନ୍ତି । ଏଥିପାଇଁ ଏକ ସ୍ୱତନ୍ତ୍ର ଅଭିଯାନ କାର୍ଯ୍ୟକ୍ରମ ହାତକୁ ନିଆଯାଇ ରାମନଗର ଓ ସୁନ୍ଦରୀ ପ୍ରଭୃତି ସମସ୍ତ ପଞ୍ଚାୟତକୁ ଦୁଇଜଣ ଅତିରିକ୍ତ ତହସିଲଦାର ଓ ୮ ଜଣ ଅମିନ ଓ ଚେନ୍‌ମେନ୍‌ଙ୍କୁ ପଠାଯାଇଥିବା ବିଷୟ ରାଜସ୍ୱ ମନ୍ତ୍ରୀ ଶ୍ରୀ ଭାଗବତ ପ୍ରସାଦ ମହାନ୍ତି ପ୍ରକାଶ କରିଛନ୍ତି ।

ଉକ୍ତ ଅଞ୍ଚଳରେ ପ୍ରତ୍ୟେକ ପରିବାରକୁ ଘରଡିହ ପାଇଁ ୪ରୁ ୧୦ ଡେସିମିଲ ଜମିପଟ୍ଟା ଦିଆଯିବ ଓ ଏକମାସ ମଧ୍ୟରେ ୧,୦୦୦ ପରିବାରଙ୍କୁ ଜମି ଦିଆଯାଇ ଥଇଥାନ କରାଯିବା ସକାଶେ ଲକ୍ଷ୍ୟ ରଖାଯାଇଛି ।

ରାଜସ୍ୱ ମନ୍ତ୍ରୀ ଶ୍ରୀ ମହାନ୍ତି ଜାନୁଆରୀ ୪ ତାରିଖରେ ଜମ୍ବୁ ଅଞ୍ଚଳ ପରିଦର୍ଶନ କରି ଏହି ସମସ୍ୟା ସମ୍ପର୍କରେ ସ୍ଥାନୀୟ ଲୋକଙ୍କ ସହିତ ଆଲୋଚନା କରିଥିଲେ । ସେଦିନ ୨୫ ଜଣ ଭୂମିହୀନ ବ୍ୟକ୍ତିଙ୍କୁ ରାଜସ୍ୱ ମନ୍ତ୍ରୀ ଘରଡିହ ପଟ୍ଟା ବଣ୍ଟନ କରିଥିଲେ ।

# ସାର୍ଥକ ସ୍ୱପ୍ନ

## ଶିଳାଶଯ୍ୟାର ସଫେନ ସଲିଳ ଝଲକେ......

କୁଳୁକୁଳୁ ଶବ୍ଦ କରି ନଦୀଟିଏ ତା'ର ଗନ୍ତବ୍ୟ ପଥରେ ବହି ଚାଲିଛି । କୂଳେକୂଳେ ତା'ର ଅଗଣିତ ବୃକ୍ଷରାଜି ମୁଣ୍ଡ ଟେକିଛି । ସେହି ବୃକ୍ଷ ସମୂହ ମନୁଷ୍ୟ ଓ ପଶୁପକ୍ଷୀମାନଙ୍କୁ ଆହାର, ବସ୍ତ୍ର ଓ ବାସୋପଯୋଗୀ ଉପକରଣ ଯୋଗାଉଛି । ଆଜି ନୁହେଁ, ସୃଷ୍ଟି ଆରମ୍ଭରୁ ଏହା ଘଟି ଆସୁଛି । ସେହି ବୃକ୍ଷରାଜି ପରାଗସଙ୍ଗମ, ପଶୁପକ୍ଷୀଙ୍କ ମଳ ଓ ମନୁଷ୍ୟମାନେ ପାଚିଲା ଫଳକୁ ଖାଇ ବିଶୃଙ୍ଖଳିତ ଭାବେ ବାଗିଆଡେ ପକାଇବା ଦ୍ୱାରା ସୃଷ୍ଟି ହୋଇଛି । ତା'ପାଇଁ ଖତସାର ବା ରାସାୟନିକ ସାର ଦରକାର ହୋଇନାହିଁ । ପ୍ରକୃତିର ପ୍ରଭାବରେ ସୃଷ୍ଟି ହୋଇ ତା'ରି ଅନୁକମ୍ପାରେ ବିଶାଳ ବୃକ୍ଷ ରୂପେ ମୁଣ୍ଡ ଟେକି ଫଳ ପୁଷ୍ପରେ ତା'ର ଶାଖାପ୍ରଶାଖାକୁ ସେ ସୁନ୍ଦର ଭାବରେ ସଜାଇ ରଖୁଥାଏ ।

ଜନସଂଖ୍ୟା ବଢ଼ିବା ସଙ୍ଗେସଙ୍ଗେ ଦେଶରେ ଖାଦ୍ୟାଭାବ ଦେଖା ଦେଇଛି । ପୁଷ୍ଟିକର ଖାଦ୍ୟାଭାବରୁ ମନୁଷ୍ୟମାନେ ଅକାଳ ମୃତ୍ୟୁ ମୁଖରେ ପଡୁଛନ୍ତି । ଦୃଷ୍ଟିହୀନତା, ରକ୍ତହୀନତା ପ୍ରଭୃତି ନାନା ପ୍ରକାର ବ୍ୟାଧିଗ୍ରସ୍ତ ହୋଇ ପଙ୍ଗୁ ହୋଇଯାଉଛନ୍ତି । ଏତଦ୍‌ବ୍ୟତୀତ ବୈଜ୍ଞାନିକ ଯୁଗରେ ନାନା ପ୍ରକାର କଳ କାରଖାନା ଦିନରାତି ଚାଲି, ତା'ର ବିଷାକ୍ତ ଗ୍ୟାସ୍ ବାୟୁମଣ୍ଡଳକୁ ଦୂଷିତ କରି ଖାଦ୍ୟାଭାବ ସହିତ ତାଳ ପକାଇ ମାନବ ସମାଜର କ୍ଷତି କରିବା ପାଇଁ ଇନ୍ଧନ ଯୋଗାଉଛି । ପୁଣି ଆଡକୁ ଦୃଷ୍ଟି ନିକ୍ଷେପ କରିବ ବିଭିନ୍ନ ରଙ୍ଗର ଧୂମକୁଣ୍ଡଳୀ ସମଗ୍ର ଆକାଶକୁ ଆଚ୍ଛାଦିତ କରିଛି । ଏହାର କ'ଣ ସମାଧାନ ନାହିଁ ? ସୁଜଳା, ସୁଫଳା, ଶସ୍ୟଶ୍ୟାମଳା ଆମର ମାତୃଭୂମି କ'ଣ ଆମକୁ ଖାଦ୍ୟ ଯୋଗାଇ ପାରିବ ନାହିଁ ? ସହରେ କ'ଣ ଧରା ପୃଷ୍ଠରୁ ମାନବ ଜାତି ଲୋପ ପାଇଯିବ ? ଯଦି କଳ କାରଖାନା ନ ବସିବ ତା'ହେଲେ ବେକାର ସମସ୍ୟା ଉତ୍କଟ ହେବ । ଆମକୁ ଅନ୍ୟ ରାଷ୍ଟ୍ର ଉପରେ ସାମାନ୍ୟତମ ନିତ୍ୟ ବ୍ୟବହାର୍ଯ୍ୟ ପଦାର୍ଥ ପାଇଁ ନିର୍ଭର କରିବାକୁ ହେବ । ତେଣୁ ଆମକୁ ଏମିତି ଭାବରେ ଅଧ୍ୟବସାୟ କରିବାକୁ ପଡିବ ଯାହାଦ୍ୱାରା ଆମ ଦେଶ ସୁଜଳା, ସୁଫଳା, ଶସ୍ୟଶ୍ୟାମଳା ମାତୃଭୂମି ତଥା ଶିଳ୍ପୋନ୍ନତ ରାଷ୍ଟ୍ରରେ ପରିଣତ ହୋଇପାରିବ । ଏହି ଚିନ୍ତାଧାରା ସରଳ ଗ୍ରାମବାସୀମାନଙ୍କୁ ମଧ୍ୟ ସ୍ପର୍ଶ କଲାଣି । ସେମାନେ ମଧ୍ୟ ଏଥିପାଇଁ ଉଦ୍ୟମ 'କରି କୃତକାର୍ଯ୍ୟ ହୋଇପାରୁଛନ୍ତି । ଯେ କୌଣସି ମାଟିରେ ଫସଲ ହୋଇପାରିବ । କେବଳ ଲୋଡା ଉଦ୍ୟମ ଓ ମନୋବଳ । ଏଥିପାଇଁ ଆର୍ଥିକ ସମସ୍ୟା ପ୍ରତିବନ୍ଧକ ହେବ ନାହିଁ । ଜାତୀୟ ସରକାରଙ୍କ ନିଷ୍ପତ୍ତି କ୍ରମେ ବିଭିନ୍ନ ଜାତୀୟକରଣ ବ୍ୟାଙ୍କ୍ ଏବଂ ଅର୍ଥ ଲଗାଣ ସଂସ୍ଥାଗୁଡିକ ସାହାଯ୍ୟ କରିବା ପାଇଁ ଆଗେଇ ଆସୁଛନ୍ତି ।

ସୁନ୍ଦରଗଡଠାରୁ ମାତ୍ର ୩୦ କି.ମି. ଦୂରରେ ତମକୁଡା ଗ୍ରାମ ଅବସ୍ଥିତ । ନାମଟା ଶୁଣିଲେ କେମିତି ଶ୍ରୁତିକଟୁ ହେଉଛି । ଏହି ଗ୍ରାମରେ ବାସ କରନ୍ତି ଶ୍ରୀ ଗୋକୁଳ ଚନ୍ଦ୍ର ନାଏକ । ପାଞ୍ଚବର୍ଷ ପୂର୍ବେ ଠାବ କଲେ ଗୋଟିଏ ଅନାବାଦୀ କଙ୍କରମୟ ଜମିକୁ ସେହି ଜମିରେ ନାନା ଜାତିର ବାର୍ଷିକ ଫଳ ଏବଂ ଫୁଲର ଛୋଟବଡ ଗଛ ପ୍ରକୃତିର ଆଶୀର୍ବାଦରୁ ଶୋଭାବର୍ଦ୍ଧନ କରୁଥାଏ । ଅନତି ଦୂରରେ ଛୋଟ ଚିରସ୍ରୋତା ନିର୍ଝରିଣୀ । ପଲ୍ଲୀବାସୀମାନେ କହନ୍ତି ବର୍ଷା ଋତୁରେ ଯେତେବେଳେ ନଦୀସେତୁ ନିର୍ମିତ ହୋଇ ନ ଥିଲା, ଗୋକୁଳ ଭଦା ପୂର୍ଣ୍ଣଗର୍ଭା ନଦୀ ବକ୍ଷରେ ଏକାକୀ ଯାଆନ୍ତି ତାଙ୍କର ସେହି ଅଭିଳାଷିତ କଙ୍କରମୟ ପ୍ରକୃତିସୃଷ୍ଟ ଉଦ୍ୟାନକୁ । ତାକୁ ନିଜର ଲହୁ ଲୁହ ଦେଇ ଆଜି ସେ ହସାଇ ପାରିଛନ୍ତି । ସେହି ଉଦ୍ୟାନରେ ବର୍ତ୍ତମାନ କଦଳୀ, ନଡିଆ, ପିଜୁଳି, ଅମୃତଭଣ୍ଡା ପରି ଅନେକ ପ୍ରକାର ବୃକ୍ଷରେ ସୁଶୋଭିତ ହୋଇ ଉଠିଛି । ନିକଟସ୍ଥ ନିର୍ଝରିଣୀ କୂଳରେ ୩ ଲକ୍ଷ ଟଙ୍କା ବ୍ୟୟରେ ଦୁଇଗୋଟି ଉଠା ଜଳସେଚନ ଯନ୍ତ୍ର ବସି ଅନବରତ ବୃକ୍ଷରାଜିକୁ ଜଳସେଚିତ କରୁଛି । କଙ୍କରମୟ ଜାଗାଟି ବୃକ୍ଷରାଜି ପରିପୂର୍ଣ୍ଣ ହେବାରୁ ବିଭିନ୍ନ ସ୍ଥାନରୁ ପକ୍ଷୀମାନେ ଆସି ସକାଳ ସନ୍ଧ୍ୟାରେ ନାନା ପ୍ରକାର କଳରବରେ ପରିବେଶକୁ ମୁଖରିତ କରିପାରୁଛନ୍ତି ।

ଶ୍ରୀ ଦେବେନ୍ଦ୍ର ନାଥ ଦତ୍ତ
ଜିଲ୍ଲା ସୂଚନା ଓ ଲୋକସମ୍ପର୍କ ଅଧିକାରୀ
ସୁନ୍ଦରଗଡ

# ତୁଟି ମୋର ପୋଷେ କୁଟୁମ୍ବ......

ସୁନ୍ଦରଗଡ ଜିଲ୍ଲା ଅନ୍ତର୍ଗତ ଲେଫ୍ରିପଡା ଏକ ଆଦିବାସୀ ଅଧ୍ୟୁଷିତ ବ୍ଲକ୍ । ଏଠାରେ ବିଭିନ୍ନ ଜାତିର ଲୋକେ ତିନିଗୋଟି ଜନପଦରେ ବାସ କରନ୍ତି । ଗୋଟିଏ ପଡାରେ ଗୋପାଳ ସମ୍ପ୍ରଦାୟର ୪୫ ବର୍ଷ ବୟସ୍କ ଶ୍ରୀ କାର୍ତ୍ତିକ ଘୋଷ । ଘରେ ସ୍ତ୍ରୀ ଓ ପିଲା ମିଶି ସାତ ପ୍ରାଣୀ କୁଟୁମ୍ବ । ନିଜର ଜମିବାଡି କହିଲେ ଘରଡିହ ବ୍ୟତୀତ ଆଉ କିଛି ନାହିଁ । ବର୍ଷପାକ ପର ଘରେ ମୂଲ ଲାଗି ଓ ଘର ପାଖରେ ଥିବା ନିଜ ବଗିଚାରୁ କିଛି କିଛି ପନିପରିବା ଚାଷ କରି ତା'ର ଦୈନନ୍ଦିନ ଗୁଜୁରାଣ ମେଣ୍ଟାଇଥାଏ । ଘରର ଆର୍ଥିକ ପରିସ୍ଥିତି ସ୍ବଚ୍ଛଳ ନ ଥିବାରୁ ସେ ପାଠଶାଠ ବିଶେଷ ପଢି ପାରି ନ ଥିଲା । କେବଳ କାମଚଳା ହିସାବ କିତାବ କରିବା ଯାହା ଜାଣିଥିଲା । ଏମିତି ମନଦୁଃଖରେ ଏଣେ ତେଣେ ବୁଲାବୁଲି କରି ନିଜର ଜୀବିକା ଅର୍ଜନ କରିବା ସଙ୍ଗେ ସଙ୍ଗେ ଗୋଟିଏ ନିର୍ଦ୍ଦିଷ୍ଟ ରୋଜଗାର ପନ୍ଥା ନିର୍ଣ୍ଣୟ କରିବାକୁ ତା'ର ଆଗ୍ରହ ଥାଏ ।

ଦିନେ ଯାଇ ସ୍ଥାନୀୟ ବ୍ଲକ୍ ଉନ୍ନୟନ ଅଧିକାରୀଙ୍କୁ ସେ ଦେଖାକଲା । ନିଜର ଦୂରାବସ୍ଥା ଜଣାଇବା ସଙ୍ଗେ ସଙ୍ଗେ ବ୍ଲକ୍ ଉନ୍ନୟନ ଅଧିକାରୀଙ୍କୁ ତା'ର ଦୁଃଖର ପ୍ରତିକାର ପାଇଁ କହିଲା । ସେ ତାକୁ ସାହାଯ୍ୟ କରିବାର ପ୍ରତିଶ୍ରୁତି ଦେଲେ । ଏହା ଫଳରେ ଶ୍ରୀ ଘୋଷ ଗତ ତା୨୩.୯.୮୬ରିଖରେ ଲେଫ୍ରିପଡା ଷ୍ଟେଟ୍ ବ୍ୟାଙ୍କ୍‌ରୁ ମାତ୍ର ୨,୦୦୦ ଟଙ୍କା ଋଣ ହିସାବରେ ପାଇଲା । ସେହି ଟଙ୍କାକୁ ନେଇ ସେ ବ୍ଲକ୍ ନିକଟରେ ଏକ ଛୋଟ ହୋଟେଲ୍ ତିଆରି କରି ଚା' ପକୁଡି ଓ ଅନ୍ୟାନ୍ୟ ଖାଇବା ଜିନିଷ ବିକ୍ରି କଲା । ତା'ର ପିଲାମାନେ ମଧ୍ୟ ତାକୁ ଏହି କାର୍ଯ୍ୟରେ ପୂର୍ଣ୍ଣମାତ୍ରାରେ ସାହାଯ୍ୟ କରିବାକୁ ଲାଗିଲେ । ସେହି ଦୋକାନରେ ସେ ଦୈନିକ ୮୦ ଟଙ୍କାରୁ ୧୦୦ ଟଙ୍କା ପର୍ଯ୍ୟନ୍ତ ବିକ୍ରୟ କରି ସମସ୍ତ ଖର୍ଚ୍ଚ ଯାଇ ହାରାହାରି ୩୦ ଟଙ୍କା ପର୍ଯ୍ୟନ୍ତ ସହଜରେ ରୋଜଗାର କରି ପାରିଲା । ଗତ କିଛିଦିନ ତଳେ ସେ ସର୍ବମୋଟ ୨୦ଟି କିସ୍ତିରେ ସମସ୍ତ ଋଣ ପରିଶୋଧ କରିସାରିଛି । ବର୍ତ୍ତମାନ ସେ ଆତ୍ମନିର୍ଭରଶୀଳ ହେବା ସଙ୍ଗେ ସଙ୍ଗେ ନିଜର ପିଲାମାନଙ୍କର ପାଠପଢା କଥା ବୁଝିବା ସହିତ ଭଲ କରି ସେମାନଙ୍କୁ ଦୁଇବେଳା ଖାଦ୍ୟ ଦେଇପାରୁଛି । ଗତବର୍ଷ ଓଡିଶାର ଖଣି ଓ ଭୂତତ୍ତ୍ୱ ବିଭାଗ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ମୋହନ ନାଗ ବିଂଶସୂତ୍ରୀ କାର୍ଯ୍ୟକ୍ରମ ଅନୁଧ୍ୟାନ କଲାବେଳେ ତା'ର ଦୋକାନକୁ ଯାଇ ସୁବିଧା ଅସୁବିଧା ବୁଝିଥିଲେ । ଗତ ତା୨୬.୧୨.୮୯ରିଖ ଦିନ ଓଡିଶାର ଶ୍ରମ ଓ ନିଯୁକ୍ତି ବିଭାଗର ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଗଙ୍ଗାଧର ମାଝୀ ମଧ୍ୟ ତାଙ୍କର ଲେଫ୍ରିପଡା ଗସ୍ତ ସମୟରେ ତା'ର ଦୋକାନର ସଫଳତା ଦେଖି ଆନନ୍ଦିତ ହୋଇଥିଲେ ।

ଶ୍ରୀ ଘୋଷଙ୍କର କର୍ତ୍ତବ୍ୟନିଷ୍ଠା ଯୋଗୁଁ ସ୍ଥାନୀୟ ବି.ଡି.ଓ.ଙ୍କଠାରୁ ଆରମ୍ଭ କରି ଜିଲ୍ଲାପାଳ ଓ ଅନ୍ୟାନ୍ୟ କର୍ତ୍ତୃପକ୍ଷ ଆନନ୍ଦ ପ୍ରକାଶ କରିଛନ୍ତି ।

ଶ୍ରୀ ଅଖିଳ ଚନ୍ଦ୍ର ନାଏକ
ଅନୁବିଭାଗୀୟ ସୂଚନା ଓ ଲୋକସମ୍ପର୍କ ଅଧିକାରୀ
ସୁନ୍ଦରଗଡ ।



# ସମ୍ବାଦ ପରିକ୍ରମା

## ଉପକୂଳବର୍ତ୍ତୀ ଅଞ୍ଚଳରେ ଚିଙ୍ଗୁଡ଼ି ଚାଷ

ଘରୋଇ ଶିଳ୍ପୋଦ୍ୟୋଗୀ, କଂପାନୀ ଏବଂ ରାଜ୍ୟ ସରକାରଙ୍କ ନିଗମର ମିଳିତ ଉଦ୍ୟମରେ ଓଡ଼ିଶାର ବିସ୍ତୀର୍ଣ୍ଣ ଉପକୂଳବର୍ତ୍ତୀ ଅଞ୍ଚଳର ଖାରିପାଣି ଜଳାଧାରରେ ଚିଙ୍ଗୁଡ଼ି ମାଛ ଚାଷର ବ୍ୟାପକ ବିକାଶ ଏବଂ ପ୍ରସାର କରିବା ପାଇଁ ଓଡ଼ିଶା ସରକାର ଏକ ନୂତନ କାର୍ଯ୍ୟକ୍ରମ ଗ୍ରହଣ କରିଛନ୍ତି । ଏହି କାର୍ଯ୍ୟକ୍ରମ ଅନୁଯାୟୀ ଦେଶର ଖ୍ୟାତନାମା ଶିଳ୍ପୋଦ୍ୟୋଗୀ ଏବଂ ପ୍ରତିଷ୍ଠିତ ଘରୋଇ କଂପାନୀ, ଯେଉଁ ମାନଙ୍କର ଅତ୍ୟାଧୁନିକ ବୈଷୟିକ ଜ୍ଞାନ କୌଶଳ ପ୍ରୟୋଗ କରି ଉନ୍ନତ ମାଛ ଜାଆଁଳ ଉତ୍ପାଦନ କେନ୍ଦ୍ର ସ୍ଥାପନ, ମତ୍ସ୍ୟ ଖାଦ୍ୟ ଉତ୍ପାଦନ ସହ ବ୍ୟବସାୟିକ ଭିତ୍ତିରେ ଚିଙ୍ଗୁଡ଼ି ମାଛ ଚାଷ କରିବା ପାଇଁ ପର୍ଯ୍ୟାପ୍ତ ସୁବିଧା ଏବଂ ଆଗ୍ରହ ଥିବ, ସେ ପ୍ରକାର ସ୍ୱଚ୍ଛଳ ଶିଳ୍ପୋଦ୍ୟୋଗୀ ଏବଂ ଘରୋଇ ସଂସ୍ଥାମାନଙ୍କୁ ରାଜ୍ୟ ସରକାରଙ୍କ ପକ୍ଷରୁ ସର୍ବୋଚ୍ଚ ୨୦୦ ଏକର ଲେଖାଏଁ ଖାରିପାଣି ଜମିକୁ ଲିଜ୍ ସୂତ୍ରରେ ଦିଆଯିବ । ସଂପୃକ୍ତ ଶିଳ୍ପୋଦ୍ୟୋଗୀ ଏବଂ ସଂସ୍ଥାମାନଙ୍କୁ ନିର୍ଦ୍ଧାରିତ ହାରରେ କିସ୍ତି ସହିତ ବାର୍ଷିକ ଖଜଣା ଜମି ଲିଜ୍ ବାବଦକୁ ଦେବାକୁ ପଡ଼ିବ । ଏହି ଯୋଜନାରେ ଥିବା ବ୍ୟବସ୍ଥା ଅନୁଯାୟୀ ପ୍ରଥମେ ୧୫ ବର୍ଷ ପାଇଁ ଜମିର ଲିଜ୍ ମଞ୍ଜୁର କରାଯିବ । ସରକାର ଚାହିଁଲେ ରାଜ୍ୟ ଶିଳ୍ପୋଦ୍ୟୋଗୀ ଏବଂ ଶିଳ୍ପ ସଂସ୍ଥାମାନଙ୍କର ସ୍ୱାର୍ଥକୁ ଦୃଷ୍ଟିରେ ରଖି ଏହି ଲିଜ୍ ମିଆଦକୁ ବୃଦ୍ଧି କରିପାରିବେ ।

ଶିଳ୍ପୋଦ୍ୟୋଗୀ ବା ସଂସ୍ଥା ପ୍ରଥମ ବର୍ଷରେ ଲିଜ୍ ଜମିର ଅନ୍ୟୁନ ଏକ-ତୃତୀୟାଂଶ ଏବଂ ତିନିବର୍ଷ ମଧ୍ୟରେ ସଂପୂର୍ଣ୍ଣ ଜମିକୁ ଚିଙ୍ଗୁଡ଼ି ଚାଷ ପାଇଁ ଉପଯୋଗ କରି ନପାରିଲେ , ସରକାର ସଙ୍ଗେ ସଙ୍ଗେ ଲିଜ୍ ନାମଞ୍ଜୁର କରି ଜମି ଫେରସ୍ତ ନେଇନିଆଯିବାର ବ୍ୟବସ୍ଥା ରହିଛି ।

କେଉଁ ସ୍ଥାନରେ ଓ କେତେ ଆୟତନର ଜମି ଚିଙ୍ଗୁଡ଼ି ଚାଷ ପାଇଁ ରହିଛି, ସେ ସଂପର୍କରେ ବିଶଦ ବିବରଣୀ କଟକ, ବାଲେଶ୍ୱର ଓ ପୁରୀ ବି. ଏଫ୍. ଡି. ଏ. କାର୍ଯ୍ୟାଳୟ ଏବଂ ମତ୍ସ୍ୟ ଉପନିର୍ଦ୍ଦେଶକଙ୍କ କାର୍ଯ୍ୟାଳୟରୁ ମିଳିପାରିବ ।

ସ୍ଥାନୀୟ ଲୋକ, ବିଶେଷ କରି ଆର୍ଥିକ ଦୁର୍ବଳ ଶ୍ରେଣୀ ଏବଂ ଶିକ୍ଷିତ ବେକାରଙ୍କୁ ଉପଯୁକ୍ତ ତାଲିମ ଦେଇ ଆତ୍ମ ନିଯୁକ୍ତି ପ୍ରଦାନ କ୍ଷେତ୍ରରେ ସଂପୃକ୍ତ ଶିଳ୍ପୋଦ୍ୟୋଗୀ ଏବଂ ସଂସ୍ଥାମାନେ ଉଦ୍ୟମ କରିବେ । ଏହା ବ୍ୟତୀତ ସେ ଅଞ୍ଚଳରେ ରାସ୍ତାଘାଟ ଉନ୍ନୟନ, ବିଦ୍ୟୁତିକରଣ ଏବଂ ଜଳ ଯୋଗାଣ ଇତ୍ୟାଦିର ବ୍ୟବସ୍ଥା କରାଯିବା ପାଇଁ ଯୋଜନାରେ ଉଲ୍ଲେଖ ରହିଛି ।

## ନଡ଼ିଆ ଚାଷର ପ୍ରସାର

ଓଡ଼ିଶାର ବିଭିନ୍ନ ଅଞ୍ଚଳରେ, ବିଶେଷତଃ ଉପକୂଳବର୍ତ୍ତୀ ଜିଲ୍ଲାମାନଙ୍କରେ ନଡ଼ିଆ ଚାଷର ପ୍ରସାର ପାଇଁ ଚାଷୀମାନଙ୍କୁ ଉତ୍ସାହିତ କରିବା ସକାଶେ ଭାରତ ସରକାରଙ୍କ ନାରିକେଳ ଉନ୍ନୟନ ସଂସ୍ଥା ହେକ୍ଟର ପିଛା ୩ହଜାର ଟଙ୍କା ଲେଖାଏଁ ସବ୍‌ସିଡ଼ି ଦେଉଛନ୍ତି । ସେଥିରୁ ଚାରା ଲଗାଇବାର ପ୍ରଥମ ବର୍ଷପାଇଁ ହେକ୍ଟର ପିଛା ୧,୨୫୦ ଟଙ୍କା ଓ ଅବଶିଷ୍ଟ ଟଙ୍କାକୁ ସମାନ ୪ଟି କିସ୍ତିରେ ପରବର୍ତ୍ତୀ ଚାରି ବର୍ଷରେ ଗଛଗୁଡ଼ିକର ରକ୍ଷଣାବେକ୍ଷଣ ପାଇଁ ଦିଆଯାଇଥାଏ । ଏହି ସାହାଯ୍ୟ ସାଧାରଣତଃ ଲଗାଯାଇଥିବା ଚାରାସଂଖ୍ୟା ଓ ବଗିଚାର ଆୟତନକୁ ବିଚାର କରି ଦିଆଯାଇଥାଏ । ଆଜିସୁଦ୍ଧା ୬୬୦ ହେକ୍ଟର ଜମିରେ ନଡ଼ିଆ ଚାଷର ପ୍ରସାର କରାଯାଇଛି ଏବଂ ୧୩୩୦ ଜଣ ଚାଷୀ ଉପକୃତ ହୋଇଛନ୍ତି ପରୀଠାରେ ସଂପ୍ରତି ୨୦୩ ଜଣ ଚାଷୀଙ୍କୁ ସବ୍‌ସିଡ଼ି ବଣ୍ଟନ କରାଯାଇଛି ।

ଏହି ସାହାଯ୍ୟ ମୁଖ୍ୟତଃ ଛୋଟ ଓ ମଧ୍ୟମ ଧରଣର ଚାଷୀମାନଙ୍କ ପାଇଁ ଉଦ୍ଦିଷ୍ଟ । ଏଥିପାଇଁ ସର୍ବାଧିକ ୨ ହେକ୍ଟର ଓ ସର୍ବନିମ୍ନ ୦.୨୫ ହେକ୍ଟର ଜମି ଦରକାର । ହେକ୍ଟର ପିଛା ୧୬୦ରୁ ୧୭୫ ଚାରା ଲଗାଯାଇଥାଏ । ସାହାଯ୍ୟ ପାଇଁ ଉତ୍ସାହୀ ଚାଷୀ ନିର୍ଦ୍ଧାରିତ ଦରଖାସ୍ତ ଫର୍ମ ପୂରଣ କରି ସ୍ଥାନୀୟ ଅଞ୍ଚଳର ଉଦ୍ୟାନବିତ୍‌ଙ୍କ ଜରିଆରେ ଭୁବନେଶ୍ୱର ନୂଆପଲ୍ଲୀସ୍ଥ କେନ୍ଦ୍ର ନାରିକେଳ ଉନ୍ନୟନ ସଂସ୍ଥାର ଉପନିର୍ଦ୍ଦେଶକଙ୍କ କାର୍ଯ୍ୟାଳୟକୁ ପଠାଇବା ପାଇଁ ପରାମର୍ଶ ଦିଆଯାଇଛି ।

କେବଳ ନୂଆ ଲଗାଯାଇଥିବା ନଡ଼ିଆ ଗଛ ପାଇଁ ଚାଷୀଙ୍କୁ ସାହାଯ୍ୟ ଦିଆଯାଇଥାଏ । ୧୯୮୭ ଜୁନ୍‌ରେ ଲଗାଯାଇଥିବା ଗଛ ପାଇଁ ୧୯୮୭-୮୮ ବର୍ଷରେ ସାହାଯ୍ୟ ଦିଆଯାଇଥାଏ । ଏହି ସାହାଯ୍ୟ ନଡ଼ିଆ ଗଛ ପାଞ୍ଚ ବର୍ଷ ହେବା ପର୍ଯ୍ୟନ୍ତ ମିଳିପାରିବ । ବଗିଚାରେ ଆଗରୁ ଲଗିଥିବା ଗଛ ପାଇଁ ଏହି ସାହାଯ୍ୟ ମିଳିବ ନାହିଁ ।

ଉତ୍ସାହୀ ଚାଷୀମାନେ ନଡ଼ିଆ ଚାଷ ପାଇଁ କେବଳ ସରକାରୀ ନର୍ସରୀ କିମ୍ବା ସରକାରଙ୍କ ଦ୍ୱାରା ଅନୁମୋଦିତ ଯେ କୌଣସି ନର୍ସରୀରୁ ଚାରା ଆଣି ରୋପଣ କରିପାରିବେ । ଏହି ଚାରାସବୁ ଜଣେ ଜିଲ୍ଲାସ୍ତରୀୟ କୃଷି/ଉଦ୍ୟାନ ଅଧିକାରୀଙ୍କ ଦ୍ୱାରା ଅନୁମୋଦିତ ହେବା ଦରକାର । ଯଦି ଚାଷୀ ତା'ର ନିଜସ୍ୱ ଚାରା ରୋପଣ କରୁଥାନ୍ତି, ତେବେ ସେ ଚାରାସବୁ ଉପରୋକ୍ତ ଅଧିକାରୀଙ୍କ ଦ୍ୱାରା ମଧ୍ୟ ଅନୁମୋଦିତ ହେବା ଉଚିତ ।

# ମିଳିମିଳା ରୋଗ ପାଇଁ ହୋମିଓପାଥି ଚିକିତ୍ସା

ଡାକ୍ତର ଚତୁର୍ଭୁଜ ନାୟକ

ମିଳିମିଳା ଏକ ବାୟୁବାହିତ, ଭୂତାଣୁ (Virus) ଜନିତ ସଂକ୍ରାମକ ରୋଗ । ରୋଗୀର ପ୍ରତ୍ୟକ୍ଷ ବା ପରୋକ୍ଷ ସଂସର୍ଶରେ ଆସିବା ଦ୍ୱାରା ଏହି ଭୂତାଣୁ ସୁସ୍ଥଲୋକ ଦେହରେ ପ୍ରବେଶ କରେ ଓ ୮ରୁ ୧୫ ଦିନ ଭିତରେ ମିଳିମିଳା ରୋଗର ଲକ୍ଷଣ ପ୍ରକାଶ ପାଏ । ଏଠାରେ ମିଳିମିଳା ରୋଗର ଲକ୍ଷଣ ଓ ଉପସର୍ଗ ସମ୍ପର୍କରେ ଧାରଣା ଦିଆଯିବା ସଙ୍ଗେସଙ୍ଗେ ଉକ୍ତ ରୋଗରେ ସାଧାରଣଭାବେ ବ୍ୟବହୃତ ହେଉଥିବା କେତେକ ଔଷଧ ଓ ସେଗୁଡିକର ଲକ୍ଷଣାବଳୀ ସୂଚୀତ ହୋଇଛି । ମିଳିମିଳା ରୋଗୀର ଲକ୍ଷଣାବଳୀ ସହ ଯେଉଁ ଔଷଧର ସର୍ବାଧିକ ସାମଞ୍ଜସ୍ୟ ଥିବ, ତାହାକୁ ଉକ୍ତ ରୋଗୀ ସେବନ କରିବା ଉଚିତ ।

## ଲକ୍ଷଣ (Symptoms) :

ପ୍ରାଥମିକ ଅବସ୍ଥାରେ ସାଧାରଣ ଥଣ୍ଡା ହୋଇଥିବା ପରି ଜଣାପଡେ । ନାକରୁ ପାଣି ଗଡି ଛିଙ୍କ ହୁଏ ଓ ଆଖି ନାଲି ପଡିଯାଏ । ଦେହସାରା ଓ ତଣ୍ଟିରେ ଯନ୍ତ୍ରଣା ହୋଇ ଶୁଖିଲା କାଶ ହୁଏ ଓ ଜ୍ୱର ଆସେ । ୩/୪ ଦିନ ପରେ ଦେହର ବିଭିନ୍ନ ଜାଗାରେ ନାଲି ଛିମିରି ପରି ମିଳିମିଳା ଚିହ୍ନ (Koplik's spots) ବାହାରି ଥାଏ । କ୍ରମଶଃ ଜ୍ୱର କମିଯାଏ ଓ ମିଳିମିଳା ଚିହ୍ନ ମଉଳି ଯାଇ ଦେହରୁ ସୂକ୍ଷ୍ମ କାତି ପରି ଛାଡେ ।

## ଉପସର୍ଗ (Complications) :

ମିଳିମିଳା ସାଂଘାତିକ ଆକାର ଧାରଣ କଲେ କିମ୍ବା ପ୍ରଥମରୁ ଉପଯୁକ୍ତ ଚିକିତ୍ସା ନ କଲେ କେତେକ ପିଲାମାନଙ୍କୁ ବାତ ମାରେ, କାନରୁ ପୂଜ ବାହାରେ, ଚକ୍ଷୁ ପ୍ରଦାହ ଜନିତ ଦୃଷ୍ଟି ଶକ୍ତି ହ୍ରାସ ଘଟେ; ପାଟି, ପାକସ୍ଥଳୀ, ଅନ୍ତ୍ରନଳୀ ଓ ଅପେଣ୍ଡିକ୍ସରେ ଘା' ହୁଏ ତଥା ମସ୍ତିଷ୍କ ପ୍ରଦାହ ତଥା ନିମୋନିଆ ପରି କେତେକ ମାରାତ୍ମକ ରୋଗ ହୋଇପାରେ ।

## ଚିକିତ୍ସା (Treatment) :

ମିଳିମିଳା ରୋଗ ପାଇଁ ସାଧାରଣ ଭାବେ ନିମ୍ନଲିଖିତ ଔଷଧଗୁଡିକ ବ୍ୟବହୃତ ହୁଏ । ମିଳିମିଳା ରୋଗୀଠାରେ କେଉଁ କେଉଁ ଲକ୍ଷଣ ଥିଲେ କେଉଁ ଔଷଧ ବ୍ୟବହୃତ ହେବ, ତାହା ଏଠାରେ ବର୍ଣ୍ଣନା କରାଯାଇଛି ।

**୧. ଆକୋନାଇଟ୍ (Aconite) :**
ରୋଗର ପ୍ରଥମାବସ୍ଥାରେ ଏହାକୁ ବ୍ୟବହାର କରାଯାଏ । ଅତ୍ୟଧିକ ଜ୍ୱର ସହ ଆଖି ଓ ମୁହଁ ଲାଲ ପଡି, ଦେହ ଗରମ ହୋଇ, ଜଳାପୋଡା ସହ ବହୁତ କୁଣ୍ଡାଇ ହେଉଥିଲେ ଓ ଶୁଖିଲା କାଶ ସହ ରୋଗୀ କମ୍ ବ୍ୟବଧାନରେ ଅତ୍ୟଧିକ ପାଣି ପିଇବାକୁ ଇଚ୍ଛା କରୁଥିଲେ ଏବଂ ଅତ୍ୟଧିକ ଅସ୍ଥିରତା ଅନୁଭୂତ ହେଉଥିଲେ ଏହା ବ୍ୟବହାର୍ଯ୍ୟ ।

**୨. ବେଲାଡୋନା (Belladonna) :**

ଏହାକୁ ମଧ୍ୟ ମିଳିମିଳାର ପ୍ରାଥମିକ ଅବସ୍ଥାରେ ବ୍ୟବହାର କରାଯାଏ । ବହୁତ ଜ୍ୱର ହୋଇ ରୋଗୀ ପ୍ରଳାପ କରୁଥିଲେ, ଦେହର ଉପର ଅଂଶ ଗରମ ଓ ନିମ୍ନ ଅଂଶ ଥଣ୍ଡା ରହି ପ୍ରବଳ ମୁଣ୍ଡବିନ୍ଧା ସହ କଷ୍ଟଦାୟକ ଶୁଖିଲା କାଶ ହେଉଥିଲେ ଏବଂ ମୁହଁ ଓ ଆଖି ଲାଲ ପଡିଥିଲେ ଏହା ବିଶେଷ ଫଳପ୍ରଦ ।

**୩. ବ୍ରାୟୋନିଆ (Bryonia) :**

ଜ୍ୱର ସହ ଶୁଖିଲା ଓ ଯନ୍ତ୍ରଣା ଦାୟକ କାଶ ହୋଇ କଠିନ ଝାଡା ହେଉଥିଲେ ଏବଂ ପାଟି ଓ ଜିଭ ଶୁଖିଯାଇ ବହୁ ସମୟ ବ୍ୟବଧାନରେ ଅତ୍ୟଧିକ ଶୋଷ ହେଉଥିଲେ ତଥା ରୋଗୀ ସର୍ବଦା ଆଖି ବନ୍ଦ କରି ଶୋଇ ରହିବା ପାଇଁ ପସନ୍ଦ କରୁଥିଲେ ଏହା ଉତ୍ତମ ଫଳ ଦିଏ । ଦେହରେ ମିଳିମିଳା ଚିହ୍ନ ବାହାରିବାରେ ବିଳମ୍ବ ହୋଇ କାଶ ବା ଶ୍ୱାସ କଷ୍ଟ ହେଉଥିଲେ କିମ୍ବା ରୋଗୀ ହଠାତ୍ ଅଚେଶ ହୋଇ ସ୍ନାୟବିକ ଅସୁବିଧା ଦେଖାଗଲେ ଏହା ବ୍ୟବହାର୍ଯ୍ୟ ।

**୪. ଏପିସ୍ ମେଲ୍ (Apis Mel) :**

ମିଳିମିଳା ଚିହ୍ନ ବାହାରିବାରେ ବିଳମ୍ବ ହେଲେ କିମ୍ବା ବାହାରିବା ପରେ କୌଣସି କାରଣରୁ ଚପିଯାଇ ମସ୍ତିଷ୍କ ପ୍ରଦାହ ଜନିତ ଲକ୍ଷଣ ଦେଖାଦେଲେ ଏହି ଔଷଧ ଫଳପ୍ରଦ । ଜ୍ୱର ସମୟରେ ଶୋଇଥିବା ଅବସ୍ଥାରେ ରୋଗୀ ହଠାତ୍ ଚିତ୍କାର କରୁଥିଲେ, ଦେହର ବିଭିନ୍ନ ଅଂଶ ବିଶେଷତଃ ମୁହଁ ଫୁଲି ଯାଉଥିଲେ, ଶୁଖିଲା କାଶ ସହ ଛାତିରେ ଯନ୍ତ୍ରଣା ହୋଇ ଶ୍ୱାସକଷ୍ଟ ଅନୁଭବ ହେଉଥିଲେ, ସାରା ଦେହ ଜଳିବା ପରି ମନେ ହୋଇ କମ୍ ଶୋଷ ହେଉଥିଲେ ଏବଂ ଘର ଭିତରେ ରୋଗୀ ଅସ୍ୱସ୍ତି ଅନୁଭବ କରୁଥିଲେ ଓ ଖୋଲାପବନ ପସନ୍ଦ କରୁଥିଲେ ଏହି ଔଷଧ ପ୍ରୟୋଗ କରିବା ଆବଶ୍ୟକ ।

**୫. ଜେଲ୍‌ସିମିୟମ୍ (Gelsemium) :**

ରୋଗ ଆରମ୍ଭ ହେବା ସମୟରେ ଏହାକୁ ସେବନ କଲେ ମିଳିମିଳା ଚିହ୍ନ ଶୀଘ୍ର ବାହାରିଯାଏ । ଜ୍ୱର ସମୟରେ ନିଦୁଆ ଓ ଅବଶ ଭାବ ସହ ମୁଣ୍ଡବ୍ୟଥା, ଶୁଖିଲା କାଶ, କମ୍ ଶୋଷ ଓ ଅତ୍ୟଧିକ ଶୀତ ଏବଂ କମ୍ପ ହୋଇ ସାରା ଦେହ ଓଜନିଆ ଲାଗି ରୋଗୀ ବହୁତ ହାଲିଆ ହୋଇପଡିଲେ ଏହି ଔଷଧ ଫଳପ୍ରଦ ।

**୬. ଇପିକାକ (Ipecac) :**

ମିଳିମିଳା ଚିହ୍ନ ଧୀରେ ଧୀରେ ବାହାରି ଜ୍ୱର ସହ ଅନବରତ ବାନ୍ତିଭାବ ବା ବାନ୍ତି ହୋଇ ଘଡଘଡ ଶବ୍ଦ ସହ କାଶ ଏବଂ ଶ୍ୱାସ କଷ୍ଟ ହେଉଥିଲେ, ଜିଭ ପରିଷ୍କାର ରହି ଅତ୍ୟଧିକ ଲାଳ ବାହାରି କମ୍ ଶୋଷ ହେଉଥିଲେ ଏହାର ସେବନ ବିଧେୟ ।

**୭. ଆଣ୍ଟିମ୍ ଟାର୍ଟ (Antim tart) :**

କୌଣସି କାରଣରୁ ମିଳିମିଳା ଚିହ୍ନ ବାହାରି ହଠାତ୍ ଚପିଗଲେ କିମ୍ବା ଚିହ୍ନ ବାହାରିବାରେ ବିଳମ୍ବ ହେଲେ ଏହି ଔଷଧ ବ୍ୟବହାର୍ଯ୍ୟ । ଘଡଘଡ ଶବ୍ଦ ସହ କାଶ ହୋଇ କଫ ବାହାରୁ ନ ଥିଲେ ଏବଂ କାଶିବା ସମୟରେ ବାନ୍ତି ଓ ଶ୍ୱାସକଷ୍ଟ ହେଉଥିଲେ, ରୋଗୀ ବହୁତ ଅବଶ ହୋଇ ସର୍ବଦା ଶୋଇବା ପାଇଁ ଇଚ୍ଛା କରୁଥିଲେ ଏହାର ସେବନ ବାଞ୍ଛନୀୟ ।

**୮. ୟୁଫ୍ରେସିୟା (Euphrasia) :**

ଜ୍ୱର ସମୟରେ ଆଖି ନାଲି ପଡି ଓ ଜଳାପୋତା କରି ପ୍ରଚୁର ଲୁହ ବୋହୁଥିଲେ ଓ ନାକରୁ ସର୍ବଦା ପାଣି ଗଳୁଥିଲେ, ମୁଣ୍ଡବିନ୍ଧା ସହ ଦିନରେ ଅତ୍ୟଧିକ ଶୁଖିଲା କାଶ ହେଉଥିଲେ, ଏହା ବ୍ୟବହାର୍ଯ୍ୟ । ମିଳିମିଳା ସମୟରେ କିମ୍ବା ପରେ ଆଖିର ବିଭିନ୍ନ ଅଂଶରେ କ୍ଷତ ପାଇଁ ଏହି ଔଷଧ ବିଶେଷ ଉପକାରୀ ।

**୯. କାର୍ବୋଭେଜ୍ (Carboveg) :**

ଜ୍ୱର ସମୟରେ ଆଣ୍ଠୁଠାରୁ ପାଦ ପର୍ଯ୍ୟନ୍ତ ଦେହ ଥଣ୍ଡା ରହି ରୋଗୀ ପଙ୍ଖା ଓ ଖୋଲା ପବନ ପସନ୍ଦ କରୁଥିଲେ ଏବଂ ମିଳିମିଳା ସମୟରେ ଶୁଖିଲା କାଶ, ପତଳା ଝାଡା ସହ ପେଟ ଫମ୍ପାଉଥିଲେ ଏହାକୁ ପ୍ରୟୋଗ କରାଯାଏ ।

**୧୦. ପଲ୍‌ସେଟିଲା (Pulsatilla) :**

ମିଳିମିଳାର ଶେଷ ଅବସ୍ଥାରେ ଏହାର ସେବନ ବିଧେୟ । ଘନ ହଳଦିଆ ରଙ୍ଗ ସହ ଆଖିରୁ ପ୍ରଚୁର ପାଣି ତଥା ଲେଞ୍ଜରା ବହୁଥିଲେ, ଜ୍ୱର ସମୟରେ ପାଟି ଓ ଜିଭ ଶୁଖିଲା ରହି କମ୍ ଶୋଷ ହେଉଥିଲେ, ରାତିରେ ଶୁଖିଲା କାଶ ହୋଇ ଦିନରେ ବହୁତ କଫ ବାହାରୁଥିଲେ ଏବଂ ରୋଗୀ ଘୋଡି ନ ହୋଇ ଖୋଲା ପବନ ପସନ୍ଦ କରୁଥିଲେ ଏହା ବିଶେଷ ଫଳପ୍ରଦ । ମିଳିମିଳା ସମୟରେ କିମ୍ବା ପରେ କାନରେ ଯନ୍ତ୍ରଣା ହୋଇ ପୂଜ ବାହାରିଲେ ଅଥବା ଦୀର୍ଘ ଦିନ ଧରି କାଶ ଲାଗି ରହିଲେ ଏହାର ସେବନ ବାଞ୍ଛନୀୟ ।

**୧୧. ସ୍କୁଇଲା (Squilla) :**

ମିଳିମିଳା ସମୟରେ ଅଥବା ପରେ ଆମାଶୟ, ପତଳା ଝାଡା କିମ୍ବା ଶ୍ୱାସ କଷ୍ଟ ହେଉଥିଲେ ଏହା ଉପଶମ ଦିଏ ।

**୧୨. ମରବିଲିନମ୍ (Morbillinum) :**

ମିଳିମିଳା ସମୟରେ ଯେ କୌଣସି ସାଂଘାତିକ ଅବସ୍ଥା ସୃଷ୍ଟି ହୋଇ ଉପଯୁକ୍ତ ଔଷଧ କାର୍ଯ୍ୟ କରୁ ନ ଥିଲେ ଏହାକୁ ବ୍ୟବହାର କରିବା ଉଚିତ ।

## ପ୍ରତିଷେଧ (Prevention) :

ମିଳିମିଳା ରୋଗର ପ୍ରତିଷେଧ ପାଇଁ ସୁସ୍ଥ ପିଲାମାନଙ୍କୁ ପ୍ରତ୍ୟହ ମରବିଲିନମ୍ '୧୦୦୦' ଶକ୍ତିରୁ ସପ୍ତାହରେ ଏକପାନ କିମ୍ବା ଏହି ଔଷଧର '୨୦୦' ଶକ୍ତି ସପ୍ତାହରେ ୨/୩ ଥର ସେବନ ପାଇଁ ଦିଆଯାଇ ପାରେ । ଏହାଛଡା ଅନ୍ୟତମ ଔଷଧ "ପଲ୍‌ସେଟିଲା" ଉପରୋକ୍ତ ଉପାୟରେ ପ୍ରତିଷେଧକ ହିସାବରେ ମଧ୍ୟ ବ୍ୟବହାର କରାଯାଏ ।

## ଆନୁସଙ୍ଗିକ ଚିକିତ୍ସା :

୧. ମିଳିମିଳା ଏକ ସଂକ୍ରାମକ ରୋଗ ହୋଇଥିବାରୁ ରୋଗୀକୁ ସୁସ୍ଥ ପିଲାଙ୍କ ସହ ମିଶିବାକୁ ଦିଆ ନ ଯିବା ଉଚିତ ।

୨. ଉତ୍ତମ ବାୟୁ ଚଳାଚଳ କରୁଥିବା ଘରେ ରୋଗୀକୁ ରଖି ଚିକିତ୍ସା କରିବା ଉଚିତ ।

୩. ମିଳିମିଳା ସମୟରେ ପାଟିରେ କ୍ଷତ ହେଉଥିଲେ ରୋଗୀକୁ ଶୁଖିଲା ଖାଦ୍ୟ ନ ଦେଇ ତରଳ ଖାଦ୍ୟ ଯଥା : ଶୀ... କ୍ଷୀର, କ୍ଷୀର ସହ ପ୍ରସ୍ତୁତ ସାଗୁ, ପାଲୁଅ ବା ବାର୍ଲି, ହର୍ଲିକ୍ସ, ଫଳରସ ଓ ପରିବା ଝୋଳ ଇତ୍ୟାଦି ଦିଆଯିବା ଉଚିତ ।

୪. ମିଳିମିଳା ଚିହ୍ନ କମ୍ ବାହାରିଥିଲେ କିମ୍ବା ବାହାରିବାରେ ବିଳମ୍ବ ହେଲେ ଫୁଟୁଥିବା ଗରମ ପାଣିରେ ଗୋଟିଏ ଗାମୁଛା ବୁଡାଇ ତାକୁ ଭଲଭାବେ ଚିପୁଡିଲା ପରେ ସେହି ଗାମୁଛାରେ ପିଲାକୁ ଭଲଭାବେ ପୋଛି ଦେଲେ ଅବଶିଷ୍ଟ ଚିହ୍ନ ପ୍ରାୟ ବାହାରିଯାଏ ଓ ଜ୍ୱର ସାଧାରଣତଃ କମିଯାଏ ।

୫. ମିଳିମିଳା ସମୟରେ ରୋଗୀକୁ ପୃଥକ୍ ରଖିବା ଉଚିତ । ଦେହରେ ଚିହ୍ନ ସମ୍ପୂର୍ଣ୍ଣ ରୂପେ ବାହାରିଯିବା ପର୍ଯ୍ୟନ୍ତ ପ୍ରତ୍ୟହ ରୋଗୀକୁ ଶିଝା ଉଷୁମ ପାଣିରେ ପୋଛିଦେବା ବାଞ୍ଛନୀୟ । ଚିହ୍ନ ସମ୍ପୂର୍ଣ୍ଣ ରୂପେ ଲିଭିଗଲା ପରେ ରୋଗୀ ଦେହରେ ନିମ୍ବ ପତ୍ର ବା ହଳଦୀ ଅଥବା ଲହୁଣୀ ଭଲ ଭାବେ ଘଷି କିଛି ସମୟ ପରେ ଗାଧୋଇଦେବା ଆବଶ୍ୟକ ।

ଆସୋସିଏଟ୍ ପ୍ରଫେସର,
ଡାକ୍ତର ଅଭିନ ଚନ୍ଦ୍ର ହୋମିଓପାଥି
ମେଡିକାଲ୍ କଲେଜ୍ ଓ ହସ୍‌ପିଟାଲ୍,
ଭୁବନେଶ୍ୱର ।

# ବର୍ଗୀକୃତ କୃକଳାସ

ଶ୍ରୀ ବସନ୍ତ କୁମାର ବେହୁରା

ଇଂରାଜୀରେ ଯେଉଁ ଅର୍ଥରେ "ଲିଜାର୍ଡ" (Lizard) ଶବ୍ଦ ବ୍ୟବହୃତ ହୁଏ, ତା'ର ଓଡ଼ିଆ ପ୍ରତିଶବ୍ଦ କୃକଳାସ । ସରୀସୃପ କହିଲେ ଚାରିଟି ବର୍ଗର ପ୍ରାଣୀଙ୍କୁ ବୁଝାଏ; ଯଥା—କୃକଳାସ ଓ ସର୍ପ, କଇଁଛ, କୁମ୍ଭୀର ଏବଂ ନିଉଜିଲାଣ୍ଡରେ ଦେଖାଯାଉଥିବା ଟୁଆଟାରା । କୃକଳାସ ଓ ସର୍ପ ଏକ ବର୍ଗଭୁକ୍ତ । ଏଣ୍ଡୁଅ, ଝିଟିପିଟି, ଚମେଇ ନେଉଳ, ଗୋଧି ଆଦି ସରୀସୃପ କୃକଳାସ ଭିତରେ ଯାଆନ୍ତି । ସର୍ପ ଓ ଏମାନଙ୍କ ମଧ୍ୟରେ ଅନେକ ମେଳ ଅଛି । ସବୁଠାରୁ ସାଧାରଣ ମେଳ ହେଲା, ଉଭୟଙ୍କ ଚର୍ମ କାତି ବା ଢାଲକ ଦ୍ୱାରା ଆଚ୍ଛାଦିତ । ଉଭୟଙ୍କ ମଳମୂତ୍ର ଦ୍ୱାରା ଶାୟିତ ବା ଅନୁପ୍ରସ୍ଥ ଭାବେ ଅବସ୍ଥିତ । କୃକଳାସମାନଙ୍କର ପାଦ ଛୋଟ, ସର୍ପମାନେ ପଦହୀନ । ସାରା ପୃଥିବୀରେ ୨,୫୦୦ ବିଭିନ୍ନ ଜାତିର କୃକଳାସ ଓ ୨,୬୦୦ ଜାତିର ସାପ ଅଛନ୍ତି । ଆମ ଭାରତରେ ୧୫୯ ଜାତିର କୃକଳାସ ବାସ କରନ୍ତି । ଓଡ଼ିଶାରେ ୧୯ ଜାତି କୃକଳାସ ଦେଖାଯାଆନ୍ତି ।

## ଗୋଧି :

ଗ୍ରୀଷ୍ମ ପ୍ରଧାନ ଅଞ୍ଚଳ ଗୋଧିକା, ଗୋଧା ବା ଗୋଇସାପମାନଙ୍କର ବାସଭୂମି । ଆଫ୍ରିକା, ଏସିଆ, ମାଲୟ ଓ ଅଷ୍ଟ୍ରେଲିଆରେ ମୋଟ ୨୪ଟି ଜାତିର ଗୋଧି ଦେଖାଯାନ୍ତି । ସେଥିରୁ କେତେକ ଜଳଚର ଓ କେତେକ ସ୍ଥଳଚର । ସବୁଠାରୁ ବଡ ଗୋଧି ସୁଣ୍ଡା ଦ୍ୱୀପପୁଞ୍ଜର କମୋଡ଼ୋ ଦ୍ୱୀପ ଏବଂ ଅନ୍ୟ କେତୋଟି ନିକଟବର୍ତ୍ତୀ କ୍ଷୁଦ୍ର ଦ୍ୱୀପରେ ଦେଖାଯାଏ । ସେଠାରେ ଗୋଧା ଗୋଟିଏ ଗୋଟିଏ ଓଜନରେ ହୁଅନ୍ତି ୨୦୦ କେ: ଜି: ଓ ଲମ୍ବରେ ତିନି ମିଟର (୧୦ ଫୁଟ)ରୁ ଅଧିକ । ଛୋଟ ହରିଣ ଓ ବାର୍ହା ସେମାନଙ୍କର ଆହାର । ବେଳେ ବେଳେ ସେମାନେ ବଣୁଆ ଘୋଡ଼ାକୁ ଆକ୍ରମଣ କରିବାକୁ ପଛାନ୍ତି ନାହିଁ । ଆଶ୍ଚର୍ଯ୍ୟ ଲାଗେ । ଆହୁରି ଆଶ୍ଚର୍ଯ୍ୟର କଥା, ଏହି ରାକ୍ଷସ ଗୋଧାମାନଙ୍କର ଯେଉଁ ପୂର୍ବ ବଂଶଧର ବାସ କରୁଥିଲେ — ଅଷ୍ଟ୍ରେଲିଆ ମହାଦେଶରେ ପ୍ରାୟ ଦଶ ଲକ୍ଷ ବର୍ଷ ପୂର୍ବେ — ସେମାନେ ଲମ୍ବରେ ଥିଲେ ସାତ ମିଟର (୨୩ ଫୁଟ) । ଏବେ ସେମାନେ ନାହାନ୍ତି, ସେମାନଙ୍କର ଜୀବାଶ୍ମ ମିଳୁଛି ।

ଆମ ଭାରତରେ ଚାରି ଜାତିର ଗୋଧି ଅଛନ୍ତି । ଯଥା—ସାଧାରଣ ଗୋଧି, ସୋରିଷିଆ ଗୋଧି, ପାଣି ଗୋଧି ଓ ମରୁଭୂମି ଗୋଧି । ମରୁ ଗୋଧି ଭାରତରେ ରାଜସ୍ଥାନ, ପଞ୍ଜାବ, ମହାରାଷ୍ଟ୍ର ଓ ମଧ୍ୟପ୍ରଦେଶର ଶୁଷ୍କଭୂମି ଓ ମରୁଭୂମିରେ ବାସ କରନ୍ତି । ଭାରତ ବାହାରେ ପାକିସ୍ଥାନ, ଆଫଗାନିସ୍ଥାନ, ଇରାନ୍, ଆରବଦେଶ ଏବଂ ଆଫ୍ରିକାର ସାହାରା ମରୁଭୂମିରେ ଏହା ଦେଖିବାକୁ ମିଳେ । ବାକୀ ତିନି ଜାତିର ଗୋଧି ଓଡ଼ିଶା ସମେତ ଭାରତର ବିଭିନ୍ନ ଅଞ୍ଚଳରେ ବାସ କରନ୍ତି । ସେମାନଙ୍କ ମଧ୍ୟରେ ପାଣି ଗୋଧି ସବୁଠାରୁ ବଡ଼ । ଲମ୍ବରେ ଏହା ତିନି ମିଟର ଯାଏ ହୋଇପାରେ । ଏମାନେ ଓଡ଼ିଶାର ଭିତରେ କନିକା ଅଞ୍ଚଳ ଓ ଭାରତର ବିଭିନ୍ନ ନଦୀ ମୁହାଣର ସନ୍ତସନ୍ତିଆ ଜଙ୍ଗଲ ଭୂମିରେ ବାସ କରନ୍ତି । ଚମଡ଼ା ବ୍ୟବସାୟୀଙ୍କ ଦୌରାତ୍ମ୍ୟ ଯୋଗୁ ଏମାନଙ୍କର ସଂଖ୍ୟା ବହୁତ କମି ଗଲାଣି । ୧୯୩୦ରୁ ୧୯୮୦, ଏହି ୫୦ ବର୍ଷ ମଧ୍ୟରେ କେବଳ କଲିକତା ବନ୍ଦରରୁ ଦୁଇଶହ ଲକ୍ଷ ପାଣି ଗୋଧି ଚମଡ଼ା ବିଦେଶକୁ ରପ୍ତାନୀ ହୋଇଥିଲା ।

ସୋରିଷିଆ ଗୋଧିର ଚମଡ଼ା ସୋରିଷ ପରି ହଳଦିଆ ବାଦାମୀ । ଏହି ଗୋଧି ମୁଖ୍ୟତଃ ଉତ୍ତର ଭାରତରେ ବାସ କରେ ଏବଂ ପଞ୍ଜାବରୁ ଓଡ଼ିଶା ଓ ପଶ୍ଚିମବଙ୍ଗ ପର୍ଯ୍ୟନ୍ତ ବିସ୍ତୃତ ଅଞ୍ଚଳରେ ଦେଖାଯାଏ । ସାଧାରଣ ଗୋଧି ଭାରତର ପ୍ରାୟ ସବୁ ଅଞ୍ଚଳରେ ବାସ କରନ୍ତି । ରାତିରେ ଏମାନେ କୁକୁଡ଼ା ଘରେ ପଶି ଅଣ୍ଡା ଓ ଚିଆଁ ଖାଇଯାନ୍ତି ।

## ଏଣ୍ଡୁଅ :

ଏଣ୍ଡୁଅ, ଏଣ୍ଡା ବା ସରଟ ଆମ ବାଡ଼ି ବଗିଚାରେ ଏକ ସାଧାରଣ କୃକଳାସ । ଏହା (ବୈଜ୍ଞାନିକ ନାମ Calotes Versicolor)ର ଲମ୍ବା ମାଂସଳ ଜିଭ ପାଟି ଭିତରେ ପଛ ପଟରେ ଲାଗି ରହିଥାଏ । ପୋକଯୋକ ଦେଖିଲେ, ସେ ହଠାତ୍ ଲମ୍ବା ଜିଭକୁ ବଢ଼ାଇ ଦିଏ । ଜିଭର ଲାଳରେ ତାହା ଲାଗିଯାଏ । ଜିଭକୁ ସଙ୍କୁଚିତ କରିବା ଫଳରେ ଖାଦ୍ୟ ପ୍ରାଣୀ ପାଟି ଭିତରକୁ ଚାଲିଆସେ, ଆଉ ତାକୁ ସେ ଗିଳି ପକାଏ । ସାରା ପୃଥିବୀରେ ପ୍ରାୟ ତିନିଶହ ଜାତିର ଏଣ୍ଡୁଅ ଅଛନ୍ତି । ଭାରତରେ ୪୧ଟି ଜାତିର ଏଣ୍ଡୁଅ ଓ ଓଡ଼ିଶାରେ ତିନୋଟି ଜାତିର ଏଣ୍ଡୁଅ ମିଳନ୍ତି । ଆମ ବଗିଚାରେ ଦୁଇ ଜାତିର ଏଣ୍ଡୁଅ ଦେଖୁଁ । ଗୋଟିଏ ବଡ଼, ତା' ମୁଣ୍ଡରେ ସିନ୍ଦୁର ବର୍ଣ୍ଣ ଥାଏ । ବେକର ରଙ୍ଗ ମଳିନ ହଳଦିଆରୁ

ରଙ୍ଗର ଲାଲ୍ । ଏମାନେ ବାଡ଼ ଉପରେ ବା ଅନ୍ୟତ୍ର ବସି ମୁଣ୍ଡକୁ ଉପର ତଳ ହଲାଉଥାନ୍ତି । ଆଉ ଜାତି ଏଣ୍ଡୁଅଟିର ବୈଜ୍ଞାନିକ ନାମ (Sitana ponticeriana) ଅପେକ୍ଷାକୃତ ପାତଳ ଓ ଅପେକ୍ଷାକୃତ ଅଳ୍ପ ସଂଖ୍ୟାରେ ମିଳନ୍ତି । ଏମାନଙ୍କର ଲାଞ୍ଜ ଦୀର୍ଘ ଓ କୃଶ । ଏହି ଏଣ୍ଡୁଅଟିକୁ ଚିହ୍ନିବା ସହଜ । ସାଧାରଣ ଏଣ୍ଡୁଅର ଆଗ ଓ ପଛ ଗୋଡ଼ରେ ପାଞ୍ଚଟି କରି ଆଙ୍ଗୁଳି । ମାତ୍ର ସିତାନୀର ପଛ ଗୋଡ଼ରେ ଚାରିଟି ଆଙ୍ଗୁଳି । ଏହା ଭୂମିରେ ବାସ କରେ । ଆଉ ଗୋଟିଏ ଜାତିର ଏଣ୍ଡୁଅ ପଥୁରିଆ ଅଞ୍ଚଳରେ ରହନ୍ତି । ଏମାନଙ୍କ ମୁଣ୍ଡ ଓ ପିଠିରେ ଚୂଳ ନାହିଁ । ମୁଣ୍ଡ ଓ ଦେହ ତୁଳନାରେ ଲାଞ୍ଜର ଲମ୍ବ ଦୁଇଗୁଣ । ମାଈ ଓ ଛୁଆମାନଙ୍କର ବର୍ଣ୍ଣ ନୀଳ-ବାଦାମୀ । ଅଣ୍ଡିରାର ବର୍ଣ୍ଣ ଫିକା ବାଦାମୀ । ପ୍ରଜନନ ଋତୁ ଏପ୍ରିଲ ମଇରେ ଅଣ୍ଡିରାର ମୁଣ୍ଡ ଓ ଦେହର ଅଗ୍ରଭାଗ ଲାଲ ଓ ପଛପାଖ କଳା ରଙ୍ଗ ହୁଏ ।

ଭାରତର ମରୁଭୂମି ଅଞ୍ଚଳରେ ଏକ ଜାତି ଏଣ୍ଡୁଅ (ବୈଜ୍ଞାନିକ ନାମ Uromastix hardwickii) ଦେଖାଯାନ୍ତି । ଦିନବେଳେ ପ୍ରଖର ସୂର୍ଯ୍ୟତାପରୁ ରକ୍ଷା ପାଇବା ପାଇଁ ଏହା ତଳେ ଗାତ ମଧ୍ୟରେ ଆଶ୍ରୟ ନିଏ । ଏହାର ଲାଞ୍ଜ କଣ୍ଟାଳିଆ । ଏମାନଙ୍କର ମୁଖ୍ୟ ଖାଦ୍ୟ କୀଟପତଙ୍ଗ, ଫୁଲ, ପତ୍ର ଓ ଫଳ ।

ଦକ୍ଷିଣ ଭାରତ ଓ ଆସାମର ଜଙ୍ଗଲରେ କେତୋଟି ଏଣ୍ଡୁଅ (Draco) ଦେଖାଯାନ୍ତି, ସେମାନଙ୍କର ସାଧାରଣ ଇଂରାଜୀ ନାମ (Flying dragon)ର ଆକ୍ଷରିକ ଅର୍ଥ "ଉଡ଼ନ୍ତା ଅଗ୍ନିଉଦ୍‌ଗାରୀ ସର୍ପ" । ଏମାନେ ଲମ୍ବରେ ୨୦୦ ମିଲିମିଟର ପର୍ଯ୍ୟନ୍ତ ହୋଇଥାନ୍ତି । ଏହି "ଉଡ଼ନ୍ତା ଏଣ୍ଡୁଅ"ମାନଙ୍କ ଦେହର ଦୁଇ ପାଖରେ ଚମ ବଢ଼ିଯାଇଥିବାରୁ, ଏମାନେ ପବନ ମୁହାଁ ଲମ୍ଫ ଦେଇ କିଛି ଦୂର ପାରାଚୁଟ ଭଳି ଗତି କରିପାରନ୍ତି । ଦକ୍ଷିଣ ଭାରତରେ ଏକ ଜାତି, ଆସାମ ଓ ନାଗାଲାଣ୍ଡରେ ତିନି ଜାତି, ଏପରି ମୋଟ ଚାରି ଜାତି "ଉଡ଼ନ୍ତା ଏଣ୍ଡୁଅ" ଅଛନ୍ତି ।

## ଝିଟିପିଟି :

ଆମ ଘରମାନଙ୍କରେ ଝିଟିପିଟି ରହନ୍ତି ଓ ଆଲୁଅ ଜଳୁଥିବା ବେଳେ ଯେଉଁ କୀଟପତଙ୍ଗ ଆକୃଷ୍ଟ ହୋଇ ଆସନ୍ତି ସେମାନଙ୍କୁ ଆହାର କରନ୍ତି । ଏମାନେ ଧୀର ପ୍ରକୃତିର । ଏମାନଙ୍କର ଚମ ପତଳା ଓ ଆଖି ବଡ଼ । ଜିଭ ସାହାଯ୍ୟରେ ଝିଟିପିଟି ଶବ୍ଦ କରିପାରନ୍ତି । ମନୁଷ୍ୟର ବାସଗୃହ ଭିନ୍ନ ଭୂମିରେ, ଗଛରେ ଓ ଜଙ୍ଗଲରେ ବିଭିନ୍ନ ଜାତି ଝିଟିପିଟି ବାସ କରନ୍ତି । କେତେକ ଝିଟିପିଟି ବିଶେଷ କରି ଘର ଝିଟିପିଟି, ଝିଟିପିଟି ବା ଗୁହ-ଗୋଧିକାଙ୍କ ପାଦରେ "ଶୋଷକ" ଥିବାରୁ ସେମାନେ ପିଠିକୁ ତଳକୁ କରି ଛାତରେ ଅନାୟାସରେ ଗତି କରିପାରନ୍ତି । ଉପର ଆଶଙ୍କା ହେଲେ ଏହା ଲାଞ୍ଜ ଉପରେ ସାମାନ୍ୟ ଚାପ ଦିଏ ଓ ତାହା ମୂଳରୁ ଭାଙ୍ଗିଯାଇ ଅଲଗା ହୋଇଯାଏ । ଭୂମି ଉପରେ ପଡ଼ି ଏହି ଖଣ୍ଡିତ ଲାଞ୍ଜ କିଛି ସମୟ ଛଟର ପଟର ହୁଏ । ଶତ୍ରୁ ଏହି ଦୃଶ୍ୟ ଦେଖୁଥିବା ବେଳେ ଝିଟିପିଟି ନିରାପଦ ସ୍ଥାନକୁ ପଳାଇଯାଇ ପାରିଥାଏ । ସବୁଠାରୁ ମଜାର କଥା ଏହି ଯେ, ବିନା ରକ୍ତପାତରେ ଏମାନଙ୍କର ଲାଞ୍ଜର ପତନ ସମାପିତ ହୁଏ । ମୂଳ ଲାଞ୍ଜ ସ୍ଥାନରେ ଅଳ୍ପ ଦିନ ଭିତରେ ଆଉ ଏକ ଲାଞ୍ଜ ଜନ୍ମି ଉଠେ, ମାତ୍ର ତାହା ମାଂସାଳ, ସେଥିରେ ଆଉ ହାଡ଼ ଅସ୍ଥିତ୍ୱ ଦେଖେଇହୁଏ ନାହିଁ ।

ପୂର୍ବ ଭାରତ (ବିହାର, ବଙ୍ଗଳା, ଆସାମ ଓ ତ୍ରିପୁରାରେ ଏବଂ ଆଣ୍ଡାମାନ ଓ ନିକୋବର ଦ୍ୱୀପପୁଞ୍ଜରେ ଗୋଟିଏ ଜାତି ଝିଟିପିଟି ଦେଖାଯାନ୍ତି (ବୈଜ୍ଞାନିକ ନାମ Gecko gecko) । ଏହା ଲମ୍ବରେ ପ୍ରାୟ ୩୫ ସେମି. ଯାଏ ହୁଏ । ଏମାନେ ବୃକ୍ଷବାସୀ ଓ ମନୁଷ୍ୟ ବାସଗୃହରେ ମଧ୍ୟ ପ୍ରବେଶ କରନ୍ତି । ଏହାର ପିଠି ଲାଲ ଓ ଉଜ୍ଜ୍ୱଳିତ ଅଙ୍ଗ ଏହି ଆଖି କାମୁଡ଼େ । ଅନ୍ଧକାର ରାତିରେ ଏହାର ଡାକ "ଟୁ-କେ, ଟୁ-କେ" ଏକ ମିଟର (୧୦୦ ଗଜ) ପର୍ଯ୍ୟନ୍ତ ଶୁଣାଯାଏ ଓ ଭିତି ସଞ୍ଚାର କରେ । ଏହି ଝିଟିପିଟି "ଟକ୍‌କେ" ନାମରେ ପରିଚିତ ।

ଲୋକଙ୍କର ବିଶ୍ୱାସ ଯେ ଏହା ବିଷାକ୍ତ । ଏ ଧାରଣା ଭୁଲ । ଭାରତରେ କୌଣସି ବିଷାକ୍ତ କୃକଳାସ ଦେଖାଯାନ୍ତି ନାହିଁ ।

ନିକୋବର ଦ୍ୱୀପପୁଞ୍ଜରେ ଏକ ଜାତୀୟ ଝିଟିପିଟି ମିଳନ୍ତି, ଏମାନଙ୍କୁ (ବୈଜ୍ଞାନିକ ନାମ Ptychozoon kuhli) "ଉଡ଼ନ୍ତା ଝିଟିପିଟି" (Flying gecko) ବୋଲାଯାଏ । ଦେହ ଓ ମୁଣ୍ଡର ଦୁଇ ପାଖରେ ଚମଡ଼ା ବୃଦ୍ଧି ପାଇ ଏହା ପାରାଚୁଟ ପରି କାମ କରେ । ବିପଦ ଆପଦ ବେଳେ ଉଡ଼ନ୍ତା ଝିଟିପିଟି ପବନ ମୁହାଁ ଲମ୍ଫ ଦେଲେ କିଛି ବାଟ ଭାସି ଭାସି ଯାଇପାରେ ।

ସମଗ୍ର ପୃଥିବୀର ଉଷ୍ଣ ଅଞ୍ଚଳରେ ପ୍ରାୟ ୪୦୦ ବିଭିନ୍ନ ଜାତିର ଝିଟିପିଟି ଦେଖାଯାନ୍ତି । ଭାରତରେ ୫୯ ଜାତିର ଝିଟିପିଟି ବାସ କରନ୍ତି । ଓଡ଼ିଶାରେ ପାଞ୍ଚ ଜାତି ଝିଟିପିଟିର ସନ୍ଧାନ ମିଳିଛି ।

## ପୋହଳା ଏଣ୍ଡୁଅ :

ଭାରତୀୟ ଉପଦ୍ୱୀପ ତଥା ଓଡ଼ିଶାର ଜଙ୍ଗଲରେ ଏକ ଜାତିର ଏଣ୍ଡୁଅ ବାସ କରନ୍ତି । ତାଙ୍କୁ (ବୈଜ୍ଞାନିକ ନାମ Chamaeleo zeylanicus) ପୋହଳା ଏଣ୍ଡୁଅ ବା ମକା ସାପ ବୋଲାଯାଏ । ଏମାନେ ତରୁଶାଖାବାସୀ ଓ ଅନ୍ୟ ଏଣ୍ଡୁଅମାନଙ୍କଠାରୁ ଭିନ୍ନ । ଦେହ ଦୁଇପଟୁ ଚିପିହେଲା ପରି, ପିଠି କୁଜପଦାକାର, ମୁଣ୍ଡ ତ୍ରିଭୁଜାକାର ଓ ସେଥିରୁ ଗୋଡା ବାହାରିଥାଏ । ଲାଞ୍ଜର ଅଗ୍ରଭାଗ ପଞ୍ଜାର କମାଣି (ସ୍ପ୍ରିଂ) ପରି ଗୁଡ଼ା ହୋଇ ରହିଥାଏ । ଆବଶ୍ୟକ ଅନୁସାରେ, ସେ ଲାଞ୍ଜ ଅଗକୁ ଡାଳରେ ଗୁଡ଼ାଇ ଝୁଲି ରହିପାରେ । ପାଦ ଦୁଇ ଫାଳରେ ବିଭକ୍ତ । ଗୋଟିଏ ଫାଳରେ ଥାଏ ଦୁଇଟି ଅଙ୍ଗୁଳି ଓ ଅନ୍ୟଟିରେ ତିନୋଟି । ପ୍ରତ୍ୟେକ ପାଦର ଏଭଳି ଗଢ଼ଣ ଯୋଗୁ ତାହା ଚିମୁଟାର ଅଗ ପରି କାମ କରେ ଓ ଗଛର ଡାଳକୁ ଦୃଢ଼ ଭାବେ ଜାବୁଡ଼ି ଧରିପାରେ । ଏହି କୃକଳାସଟିର ଆଖିର ଗଢ଼ଣ ଅନ୍ୟମାନଙ୍କଠାରୁ ଭିନ୍ନ । ଆଖିର ଉପର ଓ ତଳପତା ଲାଗିଯାଇ ମଧ୍ୟସ୍ଥଳରେ ଏକ କ୍ଷୁଦ୍ର ଗୋଲାକାର ରନ୍ଧ୍ର କରିଥାଏ । ତାହା ଦେଇ ଚକ୍ଷୁ ମଧ୍ୟକୁ ଆଲୋକ ପ୍ରବେଶ କରେ । ଗୋଲ ଆଖି ଟେଲିସ୍କୋପ୍ ଭଳି ଚତୁର୍ଦ୍ଦିଗକୁ ବୁଲିପାରେ । ପ୍ରତି ଗୋଟିଏ ଆଖି ଅନ୍ୟ ଆଖିଟି ସହିତ ଏକତ୍ର କାର୍ଯ୍ୟ ନକରି ସ୍ୱତନ୍ତ୍ର ଭାବେ କ୍ରିୟାଶୀଳ ହୋଇଥିବାରୁ, ଗୋଟିଏ ଆଖି ସାମନାକୁ ଦେଖୁଥିଲା ବେଳେ, ଅନ୍ୟ ଆଖିଟି ପଛକୁ ବା ପାର୍ଶ୍ୱକୁ ନଜର ଦିଏ । ପୋହଳା ଏଣ୍ଡୁଅ ଛଅ ପ୍ରକାରେ ଦେହର ବର୍ଣ୍ଣକୁ ବଦଳାଇ ପାରୁଥିବାରୁ, ଏପରିକି ଦେହର ଗୋଟାଏ ପାଖକୁ ଗୋଟାଏ ପ୍ରକାରେ ଓ ଅନ୍ୟ ପାଖଟିକୁ ଅନ୍ୟ ପ୍ରକାରେ କରିପାରୁଥିବାରୁ ଏହାର ରଙ୍ଗ ବର୍ଣ୍ଣନା କରିବା ସହଜ ନୁହେଁ । ତରୁ ଶାଖାର ବର୍ଣ୍ଣ ସହିତ ନିଜ ଦେହକୁ ମିଳାଇ ଗୋପନରେ ରହିବାକୁ ଏହାର ସାଧାରଣ ବର୍ଣ୍ଣ ସବୁଜ ଓ ବାଦାମୀ । ଏହାର ଚମଡ଼ା ଦାନା ଦାନା ଓ ସେଥିରେ କଳା, ହଳଦିଆ ଓ ଲାଲ୍ ବର୍ଣ୍ଣ କଣିକା ଥାଏ । ଆବଶ୍ୟକତା ଅନୁସାରେ ସେମାନେ ଦେହର ସବୁଜ ଓ ବାଦାମୀ ରଙ୍ଗକୁ ହଳଦିଆ, ଧଳା ଓ କଳା ବର୍ଣ୍ଣକୁ ବଦଳାଇ ପାରନ୍ତି ।

ପୋହଳା ଏଣ୍ଡୁଅ ଲମ୍ବରେ ୧୬୫ ମିଲିମିଟର ଯାଏ ହୋଇଥାନ୍ତି । ତାଙ୍କୁ ଧରିବାକୁ ଉଦ୍ୟମ କଲେ ପାଟି ମେଲା କରି ସଁ ସଁ ଶବ୍ଦ କରି କାମୁଡ଼ନ୍ତି । ମାତ୍ର ସାନ ପିଲାଙ୍କୁ ପାଇଲେ ଭଲ ପୋଷା ମାନନ୍ତି । ଏମାନଙ୍କର ମୁଖ୍ୟ ଆହାର କୀଟ ପତଙ୍ଗ । ପାଟିର ପଛରେ ଲାଗିଥିବା ଦୀର୍ଘ ନଳାକାର ଅଠାଳିଆ ଜିଭ ଗୁଡ଼ାଇ ହୋଇ ରହିଥାଏ । ଏହା ଏତେ ଲମ୍ବା ଯେ ଦେହର ଲମ୍ବ ସହିତ ପ୍ରାୟ ସମାନ ହେବ । ପୋହଳା ଏଣ୍ଡୁଅ ଟି ବସିଥିବା ସ୍ଥାନରୁ ଖାଦ୍ୟ ପ୍ରାଣୀର ଦୂରତ୍ୱ ଭଲ ଭାବେ କଳିପାରେ ଓ ତଦନୁସାରେ ଜିଭକୁ ଶକ୍ତ ମାଂସପେଶୀ ସାହାଯ୍ୟରେ କୀଟ ପତଙ୍ଗ ଉପରକୁ ନିକ୍ଷେପ କରେ । ଜିଭ ଅଗ ଖାଦ୍ୟ ପ୍ରାଣୀ ସହିତ ଚିଟି ହୁଏ ଓ କୀଟ ପତଙ୍ଗ ଲାଳ ସହିତ ଲାଗିଯାନ୍ତି । ମାଂସପେଶୀର ସଙ୍କୋଚ

ଫଳରେ ଆଖି ପିଛୁଳାକେ ଜିଭ ପାଟି ଭିତରକୁ ଫେରି ଆସେ ଓ ଖାଦ୍ୟ ଜୀବ ଉଦରସ୍ଥ ହୁଏ ।

ମାଈ ପୋହଳା ଏଣ୍ଡୁଅ ଆଗ ଗୋଡ଼ରେ ମାଟି ଉଖୁରାଇ ଓ ପଛ ଗୋଡ଼ରେ ମାଟିକୁ ଠେଲି ଭୂମିରେ ୩୦ ସେ: ମି: ଗହୀରିଆ ଗାତଟିଏ କରି ସେଥିରୁ ୧୦ରୁ ୩୦ଟି ଯାଏ ଅଣ୍ଡା ଦେଇ ମାଟି ଘୋଡ଼ାଇ ଦିଏ ।

ପ୍ରାୟ ୮୫ ବିଭିନ୍ନ ଜାତିର ପୋହଳା ଏଣ୍ଡୁଅ ଅଛନ୍ତି । ଏମାନେ ମୁଖ୍ୟତଃ ଆଫ୍ରିକା ଓ ମାଡ଼ାଗାସ୍କାର ଦ୍ୱୀପରେ ଦେଖିବାକୁ ମିଳନ୍ତି । ଆମ ଭାରତ ତଥା ଓଡ଼ିଶାରେ କେବଳ ଉପରୋକ୍ତ ଗୋଟିଏ ଜାତିର ପୋହଳା ଏଣ୍ଡୁଅ ବାସ କରେ ।

## ଚମ୍ପେଇ ନେଉଳ :

ଚମ୍ପେଇ ନେଉଳ ପୃଥିବୀ ସାରା ଦେଖାଯାନ୍ତି । ଅବଶ୍ୟ ପଶ୍ଚିମ ଗୋଲାର୍ଦ୍ଧରେ ସେମାନେ ଅଳ୍ପ ସଂଖ୍ୟାରେ ମିଳନ୍ତି । ପ୍ରାୟ ୭୦୦ ବିଭିନ୍ନ ଜାତି ଚମ୍ପେଇ ନେଉଳ ଅଛନ୍ତି । ଭାରତରେ ୪୫ ଜାତିର ଓ ଓଡ଼ିଶାରେ ୫ ଜାତି ଚମ୍ପେଇ ନେଉଳ ଦେଖାଯାନ୍ତି । ଏମାନେ ମୁଖ୍ୟତଃ ଭୂମି ଉପରେ ବା ଗର୍ତ୍ତରେ ବାସ କରନ୍ତି । ଏମାନଙ୍କର ଦେହ ଉପରେ ଥିବା କାତି ବା ଶଳକ ଚିକ୍କଣ ଓ ଉଜ୍ଜ୍ୱଳ । ଜିଭ ଚେପ୍ଟା ଓ ଓସାରିଆ । କାହାର ଲାଞ୍ଜ ଲମ୍ବା, କାହାର ବା ଛୋଟ । ମାତ୍ର ଝିଟିପିଟି ପରି ଲାଞ୍ଜ ମୂଳସ୍ଥୁ ଭାଙ୍ଗିଯାଇପାରେ । ଶତ୍ରୁ କବଳରୁ ରକ୍ଷା ପାଇବା ପାଇଁ ଏହି ବିଶେଷତ୍ୱ ଏକ ଅଭିନବ ପନ୍ଥା । ଚମ୍ପେଇ ନେଉଳଙ୍କ ଦେହ ଲମ୍ବାଳିଆ ଓ ଗୋଡ଼ ଛୋଟ । ପ୍ରଜନନ ଋତୁରେ ଅଣ୍ଡିରା ଚମ୍ପେଇ ନେଉଳର ଦେହ ଲାଲ୍ ବା ହଳଦିଆ ହୋଇଥାଏ ।

ଚିଲିକା ହ୍ରଦର ବରକୁଦା ଦ୍ୱୀପ, "ନନ୍ଦନକାନନ" ଏବଂ ଆନ୍ଧ୍ରପ୍ରଦେଶର ଓ୍ୟାଲଟିଅର ବିଶ୍ୱବିଦ୍ୟାଳୟ ପରିସର ମଧ୍ୟରେ ଜାତିଏ ପଦହୀନ ଚମ୍ପେଇ ନେଉଳ (ବୈଜ୍ଞାନିକ ନାମ Barkudia insularis) ଦେଖାଯାନ୍ତି । ଏମାନେ ହାଲୁକା ମାଟିରେ ଲୁଚି ଛପି ରହିବାରେ ବେଶ୍ ଧୁରନ୍ଧର ।

ଭାରତର ମରୁଭୂମି ଅଞ୍ଚଳରେ ଏକ ଜାତି ଚମ୍ପେଇ ନେଉଳ (ବୈଜ୍ଞାନିକ ନାମ Ophiomorus tridactylus) ବାସ କରନ୍ତି । ଏମାନଙ୍କର ପଞ୍ଜାବୀ ନାମ "ରେତ୍-ମାହୀ" ଅର୍ଥାତ୍ ବାଲି-ମାଛ, ଇଂରାଜୀ ନାମ Indian sand swimmer ଅର୍ଥାତ୍ ଭାରତୀୟ ବାଲୁକା ପହଁରାଳି । ଏହାର ଏପରି ନାମକରଣର କାରଣ ଏହି ଯେ, ଚମ୍ପେଇ ନେଉଳଟି ବାଲି ତଳେ ତଳେ ପାଣିରେ ପହଁରିଲା ପରି ଗତି କରେ ।

## କାଚ ସାପ :

ଗୁଡ଼ିଏ କୃକଳାସ ଅଛନ୍ତି, ତାଙ୍କୁ "କାଚ ସାପ"(Glass snake) ବୋଲାଯାଏ । ଏମାନଙ୍କର ଅନ୍ୟ ଗୋଟିଏ ନାମ "ମନ୍ଥର ଗତି କୃମି" (Slow worm) । ଏମାନେ କୃମି ନୁହନ୍ତି କି ସାପ ନୁହଁନ୍ତି, ଖୋଦାପଣ କୃକଳାସ । ତେବେ, ସେମାନଙ୍କର କେତେକ ବିଶେଷତ୍ୱ ଯୋଗୁ ଏପରି ନାମକରଣ ହୋଇଅଛି । କାଚ ସାପମାନଙ୍କର ଲାଞ୍ଜ ଅତ୍ୟନ୍ତ ଭଙ୍ଗୁର, ଜିଭ ସାପ ଜିଭ ପରି ଦିଫାଳିଆ, କେତେକ ଜାତି ସମ୍ପୂର୍ଣ୍ଣ ପଦହୀନ । ନବ ଗୋଲାର୍ଦ୍ଧ, ୟୁରୋପ ଓ ଏସିଆର କେତେକ ଅଞ୍ଚଳରେ ପ୍ରାୟ ୪୦ ଜାତି କାଚ ସାପ ଦେଖାଯାନ୍ତି । ଆମ ଭାରତରେ କେବଳ ଗୋଟିଏ ଜାତି ପଦହୀନ (ବୈଜ୍ଞାନିକ ନାମ Ophisaurus gracilis) କାଚ ସାପ କୃକଳାସ ବାସ କରେ । ହିମାଳୟର ପୂର୍ବାଞ୍ଚଳ – ଦାର୍ଜିଲିଙ୍ଗ୍ ଓ ଖାସୀ ପର୍ବତମାଳାରେ ୮୨୦–୧୫୦୦ ମିଟାର ଉଚ୍ଚତାରେ, କାଠଗଡ଼ ଓ ପଥର ତଳେ ଏମାନଙ୍କୁ ଦେଖିବାକୁ ମିଳେ । ଦେହରେ କାତି ଅନ୍ୟ ଧାଡ଼ିର କାତି ଉପରେ ମାଡ଼ି କରି ରହିଥାଏ । ଏହା ସାପ ପରି ଦେହକୁ ଉଭୟ ପାର୍ଶ୍ୱକୁ ଆନ୍ଦୋଳିତ କରି ଗତି କରେ ଓ ଲକଲକିଆ ଦିଫାଳିଆ ଜିଭକୁ ଲହଲହ କରି ପଥ ଠଉରାଏ । ହେଲେ, ଏହା ଯେ ସାପ ନୁହେଁ, ତାହା ଚିହ୍ନିବା ପାଇଁ ଦୁଇଟି ଲକ୍ଷଣ ଅଛି । ଯଥା–ଏହାର ଆଖି ପତା ଚଳନଶୀଳ, ଏଣୁ ମଲେ ଆଖି ବୁଜି ହୋଇଥାଏ; ଏହାର କର୍ଣ୍ଣ ରନ୍ଧ୍ର ଅଛି । ହାତରେ ଧରିଲେ କାଚ ସାପ କାମୁଡ଼େ ନାହିଁ; ପ୍ରଥମେ ମୃତ ବୋଲି ପେଖନା କରେ । ମାଈ କାଚ ସାପ ୪ରୁ ୬ଟି ଅଣ୍ଡା ଦିଏ । ଏମାନଙ୍କର ମୁଖ୍ୟ ଆହାର କୀଟ ପତଙ୍ଗ ।

## ପ୍ରତିରୂପ କୃକଳାସ :

ଭାରତରେ ମିଳୁଥିବା କୃକଳାସ ଆଠଟି ଶ୍ରେଣୀ ଅନ୍ତର୍ଭୁକ୍ତ । ଯଥା–ଝିଟିପିଟି (Gekkonidae), ଏଣ୍ଡୁଅ (Agamidae), ପୋହଳା ଏଣ୍ଡୁଅ (Chamaeleonidae), ଚମ୍ପେଇ ନେଉଳ (Scincidae), କୃମି କୃକଳାସ (Diliamidae), କାଚ ସାପ (Anguidae), ଗୋଧି (Varanidae) ଓ ପ୍ରତିରୂପ କୃକଳାସ (Lacertidae) ।

ଶେଷୋକ୍ତ କୃକଳାସମାନଙ୍କର ବିଶେଷତ୍ୱ ଏହି ଯେ ଏମାନଙ୍କ ଦେହ କ୍ଷୀଣ, ଗୋଡ଼ ବେଶ୍ ଲମ୍ବା, ଲାଞ୍ଜ ଲମ୍ବା ଓ ଗୋଳିଆ । ଏମାନେ ବାଲି ବହୁଳ ଅଞ୍ଚଳ, ଘାସ ପଡ଼ିଆ ଓ ପଥୁରିଆ ଜାଗାରେ ରହନ୍ତି । ଦେଖିବାକୁ ଏଣ୍ଡୁଅ ପରି ହେଲେ ମଧ୍ୟ, ଏହି କୃକଳାସମାନଙ୍କର ଲାଞ୍ଜ ସହଜରେ ଭାଙ୍ଗିଯାଏ (ସାଧାରଣ ଏଣ୍ଡୁଅମାନଙ୍କର ଲାଞ୍ଜ ଭଙ୍ଗୁର ନୁହେଁ) ଓ ପୁଣି ଗଜୁରି ଉଠେ । ଏହି ଏଣ୍ଡୁଅମାନେ ଏତେ କ୍ଷିପ୍ର ଗତିରେ ଦୌଡ଼ନ୍ତି ଯେ ସେହି ଗତିକୁ ଆଖିରେ ଧରିହୁଏ ନାହିଁ । ଏମାନେ ମୁଖ୍ୟତଃ ପତଙ୍ଗଭୋଜୀ । ଭାରତରେ ସାତ ଜାତିର ଏବଂ ଓଡ଼ିଶାରେ କେବଳ ଗୋଟିଏ ଜାତିର ପ୍ରତିରୂପ କୃକଳାସ ମିଳନ୍ତି । ଆଫ୍ରିକା, ୟୁରୋପ ଓ ଏସିଆରେ ୧୫୦ ଜାତିର ଏ ଶ୍ରେଣୀୟ କୃକଳାସ ଦେଖାଯାନ୍ତି ।

## କୃମି କୃକଳାସ :

ଗ୍ଭରି ଜାତି ଚକ୍ଷୁହୀନ, କର୍ଣ୍ଣହୀନ, ପଦହୀନ ବା କ୍ଷୁଦ୍ର ପଦଯୁକ୍ତ ଗର୍ତ୍ତବାସୀ କୃକଳାସ ଭାରତରେ ନିକୋବର ଦ୍ୱୀପପୁଞ୍ଜ, ଇଣ୍ଡୋ-ଚୀନ, ଫିଲିପାଇନ୍ସ ଦ୍ୱୀପପୁଞ୍ଜରୁ ନିଉଗିନି ଅଞ୍ଚଳ ଓ ମେକ୍ସିକୋରେ ଦେଖାଯାନ୍ତି । ଏମାନେ ଚମ୍ପେଇ ନେଉଳଙ୍କ ବଂଶଧର — ବିକାଶ ହ୍ରାସ ପାଇଥିବା ଚମ୍ପେଇ ନେଉଳ । ନିକୋବର ଦ୍ୱୀପପୁଞ୍ଜରେ କେବଳ ଗୋଟିଏ ଜାତି କୃମି କୃକଳାସ ମିଳେ । ଏହା ପଦହୀନ, ଲମ୍ବରେ ୨୨୫ ମିଲିମିଟାର ହୁଏ, ଦେଖିଲେ ମନେ ହେବ କୃମିଟିଏ ପରା ।

## ବିଷାକ୍ତ କୃକଳାସ :

ଭାରତରେ ଦେଖାଯାଉଥିବା କୌଣସି କୃକଳାସ ବିଷାକ୍ତ ନୁହନ୍ତି । କେବଳ ଆମେରିକାର ଆରିଜୋନା, ନେଭାଡ଼ା, ଉଟା(ହ) ଓ ମେକ୍ସିକୋର ମରୁଭୂମିରେ ଦୁଇ ଜାତିର କୃକଳାସ ଦେଖାଯାନ୍ତି । ସେମାନଙ୍କର ନାମ "ଗିଲା ରାକ୍ଷସ" ଓ "କଣ୍ଠି କୃକଳାସ" । ଏମାନେ ଲମ୍ବରେ ଯଥାକ୍ରମେ ୦.୫ ମିଟାର (୨୦ ଇଞ୍ଚ) ଓ ୦.୮ ମିଟାର (୩୨ ଇଞ୍ଚ) ହୁଅନ୍ତି । ଏମାନଙ୍କର ତଳ ପାଟିରେ ବିଷଗ୍ରନ୍ଥି ଥାଏ । ହେଲେ ଏମାନଙ୍କ କାମୁଡ଼ାରେ ମନୁଷ୍ୟର ମୃତ୍ୟୁ ହୁଏ ନାହିଁ । ବିଷାକ୍ତ ସାପଙ୍କର ଉପର ପାଟିରେ ବିଷ ଦାନ୍ତ ଥାଏ ଓ ବିଷଗ୍ରନ୍ଥିରୁ ବିଷ ଝରି ଦାନ୍ତ ଅଗ ଦେଇ କ୍ଷତରେ ପଶେ । ଉପରୋକ୍ତ ବିଷାକ୍ତ କୃକଳାସଙ୍କ ଦାନ୍ତ ମୂଳ ବାଟେ ବିଷଗ୍ରନ୍ଥିରୁ ବିଷ ଝରିଆସି ଦାନ୍ତ ଅଗ ଦେଇ କ୍ଷତରେ ପ୍ରବେଶ କରେ ନାହିଁ । ଏଣୁ ଏମାନଙ୍କର ବିଷ ସର୍ପ ବିଷ ପରି କାବୁ କରିପାରେ ନାହିଁ ।

### ଉପକାରିତା :

କୁକଲାସମାନଙ୍କର ମୁଖ୍ୟ ଖାଦ୍ୟ କୀଟପତଙ୍ଗ ଓ ମୂଷା । ଆମ ଫସଲର ଧ୍ୱଂସକାରୀ କୀଟପତଙ୍ଗ ଓ ମୂଷାଙ୍କୁ ଆହାର କରି ସେମାନେ ଆମର ପ୍ରଭୂତ ଉପକାର କରନ୍ତି । ସେମାନେ ମନୁଷ୍ୟର ପରମ ବନ୍ଧୁ । ସେମାନଙ୍କୁ ହତ୍ୟା କରିବା ଏକ ଅପରାଧ । ଜୀବ ସୃଷ୍ଟିରେ କୌଣସି ପ୍ରାଣୀ ନଗଣ୍ୟ ବା ଅଲୋଡ଼ା ନୁହେଁ । ପ୍ରକୃତି ରାଜ୍ୟରେ ଭାରସାମ୍ୟ ରକ୍ଷା କରିବାରେ ସେମାନେ ଗୁରୁତ୍ୱପୂର୍ଣ୍ଣ ଭୂମିକା ନିଅନ୍ତି ।

### ସଂରକ୍ଷଣ :

ଜଙ୍ଗଲ କାଟି ଦିଆଯିବା ଫଳରେ, ମଣିଷର ଚମଡ଼ା ଲୋଭ ଯୋଗୁଁ, ଘରେ ଓ ବିଲବାଡ଼ିରେ କୀଟ ଓ ମୂଷାମାରୀ ରାସାୟନିକ ବିଷ ପ୍ରୟୋଗ ହେତୁ ଏବଂ ଅନ୍ୟାନ୍ୟ କାରଣରୁ କୁକଲାସମାନଙ୍କର ସଂଖ୍ୟା ହ୍ରାସ ହେବାରେ ଲାଗିଛି । କେତେକ ଜାତି କୁକଲାସଙ୍କର ବଂଶ ଲୋପ ହେବାର ଆଶଙ୍କା କରାଯିବାରୁ ଭାରତ ସରକାର ୧୯୭୨ରେ ପ୍ରଣୀତ ବନ୍ୟ-ଜୀବନ (ସଂରକ୍ଷଣ) ଆକ୍ଟ ଅନୁଯାୟୀ ଗୁଡ଼ି ଜାତି ଗୋଧିଙ୍କ ଶିକାର, ପାଳନ, ଚମଡ଼ା କାରବାର ଆଦି ସମ୍ପୂର୍ଣ୍ଣ ରୂପେ ନିଷିଦ୍ଧ କରିଅଛନ୍ତି । ଆହୁରି ମଧ ନିମ୍ନଲିଖିତ କୁକଲାସଙ୍କୁ ପ୍ରଦେଶର ମୁଖ୍ୟ ବନ୍ୟ ଜୀବନ ରକ୍ଷକଙ୍କ ଅନୁମତି ବିନା ଶିକାର କରିବା ବା ଧରିବା ମନା ।

(୧) ସୋହଳା ଏଣ୍ଡୁଅ ।

(୨) ମରୁଭୂମି ଏଣ୍ଡୁଅ (ୟୁରୋମାଷ୍ଟିକସ୍) ।

୩୦୦ ଖାରବେଳ ନଗର, ୟୁନିଟ୍ ୩,
ଭୁବନେଶ୍ୱର-୭୫୧ ୦୦୧ ।

## ବ୍ଲକ୍‌ସ୍ତରରେ ସୂଚନା ଅଧିକାରୀ ପଦବୀ ସୃଷ୍ଟି

ସରକାର ଓ ଜନସାଧାରଣଙ୍କ ମଧ୍ୟରେ ସମ୍ପର୍କକୁ ଅଧିକ ଦୃଢ଼ୀଭୂତ କରିବା ଲାଗି ବ୍ଲକ୍‌ସ୍ତରରେ ସୂଚନା ଓ ଲୋକସମ୍ପର୍କ ଅଧିକାରୀ ପଦବୀ ସୃଷ୍ଟି କରାଯାଇ ଅଷ୍ଟମ ଯୋଜନା କାଳ ମଧ୍ୟରେ ବ୍ଲକ୍‌ସ୍ତରରେ ଅବସ୍ଥାପିତ କରାଯିବ ବୋଲି ସୂଚନା ଓ ଉପା ଜଳସେଚନ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଅମର ପ୍ରଧାନ ଭୁବନେଶ୍ୱରରେ ପ୍ରକାଶ କରିଛନ୍ତି ।

ନୂତନ ଭାବେ ସୃଷ୍ଟି ହୋଇଥିବା ଭୁବନେଶ୍ୱର ସୂଚନା ଓ ଲୋକ ସମ୍ପର୍କ ଜିଲ୍ଲା କାର୍ଯ୍ୟାଳୟ ସୂର୍ଯ୍ୟନଗରସ୍ଥ ପ୍ଲଟ୍ ନମ୍ବର ୧୩/୧୭ ଠାରେ ଉଦ୍‌ଘାଟନ କରି ଶ୍ରୀ ପ୍ରଧାନ କହିଲେ ଯେ ଏହି ବିଭାଗର କର୍ମଚାରୀମାନଙ୍କ ମନୋବଳ ଏବଂ କର୍ମପ୍ରେରଣାକୁ ବଜାୟ ରଖିବା ପାଇଁ କର୍ମକ୍ଷେତ୍ରରେ ସେମାନଙ୍କ ପଦୋନ୍ନତି ବ୍ୟବସ୍ଥାକୁ ପ୍ରସାରିତ କରାଯିବ ।

ସହକାରୀ ସୂଚନା ଅଧିକାରୀ ଓ ଜିଲ୍ଲାସ୍ତରୀୟ ସୂଚନା ଓ ଲୋକ ସମ୍ପର୍କ ଅଧିକାରୀମାନେ ଚାକିରିରୁ ଅବସର ଗ୍ରହଣ ପର୍ଯ୍ୟନ୍ତ ପଦୋନ୍ନତି ପାଇ ପାରୁନଥିବା ଏବଂ ଅଳ୍ପ କେତେଜଣ ମାତ୍ର ଥରେ ପଦୋନ୍ନତି ପାଉଥିବା ହେତୁ ଶ୍ରୀ ପ୍ରଧାନ କ୍ଷୋଭ ପ୍ରକାଶ କରି କହିଲେ ଯେ ଏପରି ହେଲେ ଲୋକସମ୍ପର୍କ ରକ୍ଷା ଓ ତଥ୍ୟ ସଂଗ୍ରହ ଏବଂ ବିତରଣ ଭଳି କଠିନ କାର୍ଯ୍ୟ ସମ୍ପାଦନ କ୍ଷେତ୍ରରେ ସେମାନଙ୍କ ଉତ୍ସାହ କମିଯିବ ଏବଂ ସରକାରଙ୍କ ସହ ଲୋକଙ୍କ ସମ୍ପର୍କ ରକ୍ଷା ବାଧାପ୍ରାପ୍ତ ହେବ ।

ଉତ୍ସବରେ ସମ୍ମାନିତ ଅତିଥି ଭାବେ ଯୋଗଦେଇ କ୍ରୀଡ଼ା ଓ ଜଳସେଚନ ରାଷ୍ଟ୍ରମନ୍ତ୍ରୀ ଶ୍ରୀ ଭୂପିନ୍ଦର ସିଂହ କହିଲେ ଯେ ସପ୍ତମ ଯୋଜନା କାଳରେ ଅନ୍ୟ ରାଜ୍ୟ ତୁଳନାରେ ଜନସଂଖ୍ୟା ଅନୁପାତରେ ଓଡ଼ିଶା ଲାଗି ଉଦ୍ଦିଷ୍ଟ ନିର୍ଦ୍ଦିଷ୍ଟ ସଂଖ୍ୟକ ଦୂରଦର୍ଶନ ରିଲେ କେନ୍ଦ୍ର ସ୍ଥାପିତ ହୋଇପାରିଛି ଏବଂ ୨୦୦ ଶକ୍ତି ସମ୍ପନ୍ନ ଦେଶର ଅନ୍ୟତମ ବୃହତ୍ ଆକାଶବାଣୀ କେନ୍ଦ୍ର ଭବାନୀପାଟଣାଠାରେ ନିର୍ମାଣ କରାଯାଇ ପାରିଛି ।

ଉତ୍ସବରେ ପୌରୋହିତ୍ୟ କରି ସୂଚନା ଓ ଲୋକସମ୍ପର୍କ ଶାସନ ସଚିବ ଶ୍ରୀ ପ୍ରଦୀପ କୁମାର ମହାନ୍ତି କହିଲେ ଯେ ଆଧୁନିକ ବୈଜ୍ଞାନିକ ଯୁଗର ଉପଯୋଗୀ ହୋଇ ପାରିବା ଭଳି ସୂଚନା ଓ ଲୋକସମ୍ପର୍କ ବିଭାଗକୁ ଅତ୍ୟାଧୁନିକ କରାଯିବା ଏବଂ କର୍ମଚାରୀମାନଙ୍କୁ ସେଥିଲାଗି ତାଲିମ ଦେବା ନିମନ୍ତେ ଯୋଜନା ପ୍ରସ୍ତୁତ କରାଯିବା ଆବଶ୍ୟକ ।

ବିଭାଗୀୟ ସ୍ୱତନ୍ତ୍ର ଶାସନ ସଚିବ ଶ୍ରୀ ସୁବାସ ପାଣି ଭୁବନେଶ୍ୱର, ଖୋର୍ଦ୍ଧା, ଦେଓଗଡ ଏବଂ କେନ୍ଦ୍ରାପଡାଠାରେ ନୂତନ ଲୋକସମ୍ପର୍କ ଜିଲ୍ଲା କାର୍ଯ୍ୟାଳୟ ନିର୍ଦ୍ଧାରିତ ସମୟ ମଧ୍ୟରେ ଖୋଲାଯାଇ ପାରିଥିବା ପ୍ରକାଶ କରିଥିଲେ ।

ଉତ୍ସବରେ ସ୍ୱାଗତ ଭାଷଣ ଦେଇ ସୂଚନା ଓ ଲୋକସମ୍ପର୍କ ନିର୍ଦ୍ଦେଶକ ଶ୍ରୀ ଅଜିତ କୁମାର ତ୍ରିପାଠୀ ବିଭାଗର ସମ୍ପ୍ରସାରଣ କାର୍ଯ୍ୟକ୍ରମର ବିବରଣୀ ପ୍ରଦାନ କରି ନିର୍ଦ୍ଦିଷ୍ଟ ସମୟ ସୀମା ମଧ୍ୟରେ ବିଭାଗୀୟ କୋଠାର ସମ୍ପ୍ରସାରଣ କାର୍ଯ୍ୟ ଶେଷ ଏବଂ ବଲାଙ୍ଗୀରଠାରେ ଜିଲ୍ଲା କାର୍ଯ୍ୟାଳୟର ନିର୍ମାଣ କାର୍ଯ୍ୟ ଆରମ୍ଭ କରାଯାଇ ପାରିଛି ବୋଲି ପ୍ରକାଶ କରିଥିଲେ ।

# ମଣିଷର ଭାଷା ଓ ଐକ୍ୟଚେତନା

ଶ୍ରୀମତୀ ବିଜୟଲକ୍ଷ୍ମୀ ମହାନ୍ତି

ଭାରତର ୧୯୬୧ ଜନଗଣନା ଅନୁସାରେ ଭାରତରେ ପ୍ରଚଳିତ ମାତୃଭାଷା ସଂଖ୍ୟା ୧୬୫୨ । ଏ ଭାଷାଗୁଡିକ ମୁଖ୍ୟତଃ ଇଣ୍ଡୋ–ଆରିୟାନ୍, ଅଷ୍ଟ୍ରିକ୍, ଦ୍ରାଭିଡିଆନ୍ ଓ ତିବତୋ–ଚାଇନିଜ୍ ପରିବାରଭୁକ୍ତ । ପ୍ରାୟ ୪୦୦ ଆଦିବାସୀ ଭାଷା ଏହି ସଂଖ୍ୟାରେ ଅନ୍ତର୍ଭୁକ୍ତ । ଭାରତର ସମ୍ବିଧାନ ସ୍ୱୀକୃତ ଭାଷା ମଧ୍ୟରୁ ସିନ୍ଧି ଓ ଉର୍ଦ୍ଦୁ କୌଣସି ନିର୍ଦ୍ଦିଷ୍ଟପ୍ରଦେଶର ପ୍ରଧାନ ଭାଷା ନୁହନ୍ତି । ହିନ୍ଦି ଛଅଟି ରାଜ୍ୟର, ଯଥା– ହିମାଚଳପ୍ରଦେଶ, ହରିୟାନା, ରାଜସ୍ଥାନ, ଉତ୍ତରପ୍ରଦେଶ, ମଧ୍ୟପ୍ରଦେଶ ଓ ବିହାରର ପ୍ରଧାନ କଥିତ ଭାଷା । ଅନ୍ୟ ପ୍ରଧାନ ଭାଷା ଭିତରୁ ଓଡିଆ, ଅସମୀୟା, ବଙ୍ଗଳା ପୂର୍ବାଞ୍ଚଳର; ମରାଠୀ ଓ ଗୁଜରାଟୀ ପଶ୍ଚିମାଞ୍ଚଳର; ପଞ୍ଜାବୀ ଓ କାଶ୍ମିରୀ ଉତ୍ତରାଞ୍ଚଳର ଏବଂ ତେଲୁଗୁ, ତାମିଲ୍, କନ୍ନଡ ଓ ମାଲୟାଲମ୍ ଦକ୍ଷିଣାଞ୍ଚଳରେ ବ୍ୟବହୃତ । ବିଭିନ୍ନ ରାଜ୍ୟରେ ବ୍ୟବହୃତ ପ୍ରଧାନ ଭାଷାଗୁଡିକ ଇଣ୍ଡୋ–ଆରିୟାନ୍ ଓ ଦ୍ରାଭିଡିଆନ୍ ପରିବାର ଅନ୍ତର୍ଭୁକ୍ତ ।

ଭାଷାଭିତ୍ତିକପ୍ରଦେଶ ଗଠନ ଦ୍ୱାରା ଭାରତରେ ବର୍ତ୍ତମାନ ଆଞ୍ଚଳିକ ଭାଷା ପ୍ରତି ଅଧିକ ଧ୍ୟାନ ଦିଆଯିବା ସଙ୍ଗେସଙ୍ଗେ ଆଞ୍ଚଳିକ ଭାଷାର ବିକାଶ ଓ ଅଭିବୃଦ୍ଧି ପାଇଁ ପ୍ରାଦେଶିକ ତଥା ଜାତୀୟ ସ୍ତରରେ ମଧ୍ୟ ଉଦ୍ୟମ ହେଉଛି । କିନ୍ତୁ କୌଣସି ଗୋଟିଏ ଭାଷା କୌଣସି ଗୋଟିଏ ନିର୍ଦ୍ଦିଷ୍ଟ ଅଞ୍ଚଳର ବା ପ୍ରଦେଶର ପ୍ରଧାନ କଥିତ ଭାଷା ହେଲେ ମଧ୍ୟ ସେଇ ଅଞ୍ଚଳ ବା ପ୍ରଦେଶରେ ପ୍ରଧାନ କଥିତ ଭାଷା ସହିତ ଏକାଧିକ ଅନ୍ୟ ଭାଷାଭାଷୀ ଲୋକ ବସତି ସେଇ ଅଞ୍ଚଳକୁ ବହୁ ଭାଷୀ ଅଞ୍ଚଳରେ ପରିଣତ କରିବା ସଙ୍ଗେସଙ୍ଗେ ଏକ ସହନଶୀଳ ସହାବସ୍ଥାନ ତଥା ବିଭିନ୍ନ ଭାଷାଭାଷୀଙ୍କ ମଧ୍ୟରେ ଭାବ ସମନ୍ୱୟ ପାଇଁ ପଥ ଉନ୍ମୁକ୍ତ ରଖିପାରିଛି । ପୁଣି ଲକ୍ଷ୍ୟ କରାଯାଇପାରେ ଯେ ବିଭିନ୍ନ ଅଞ୍ଚଳରେ • ବ୍ୟବହାର ହେଉଥିବା ପ୍ରଧାନ ଭାଷୀ ଲୋକ ସଂଖ୍ୟାରେ ତାରତମ୍ୟ ଅଛି । ଆନ୍ଧ୍ର ପ୍ରଦେଶରେ ତେଲୁଗୁ, ଗୁଜୁରାଟରେ ଗୁଜୁରାଟୀ, କେରଳରେ ମାଲାୟଲମ୍, ଉତ୍ତରପ୍ରଦେଶରେ ହିନ୍ଦି ଓ ପଶ୍ଚିମବଙ୍ଗରେ ବଙ୍ଗଳାକୁ ପ୍ରଧାନ ଭାଷା ଭାବରେ ବ୍ୟବହାର କରୁଥିବା ଲୋକଙ୍କ ସଂଖ୍ୟା ଶତକଡା ୮୫ ଭାଗରୁ ୯୫ ଭାଗ । ଅନ୍ୟ ପକ୍ଷରେ ଆସାମ, ବିହାର, ପଞ୍ଜାବ ଓ ରାଜସ୍ଥାନରେ ଯଥାକ୍ରମେ ଅସମୀୟା, ହିନ୍ଦି, ପଞ୍ଜାବୀ ଓ ରାଜସ୍ଥାନୀ–ହିନ୍ଦିକୁ ଶତକଡା ୩୩.୩୨ ଭାଗରୁ ୪୭.୧୪ ଭାଗ ଲୋକ ପ୍ରଧାନ ଭାଷା ଭାବରେ ବ୍ୟବହାର କରନ୍ତି । ପୁଣି କନ୍ନଡ ଓ ତାମିଲକୁ କର୍ଣ୍ଣାଟକ ଓ ତାମିଲନାଡୁରେ ଯଥାକ୍ରମେ ୬୫.୧୭ ଭାଗ ଓ ୮୩.୧୭ ଭାଗ ଲୋକ ବ୍ୟବହାର କରିଥାନ୍ତି । ଏହାଛଡା କାଶ୍ମିରୀ ଭାଷା କାଶ୍ମିରରେ ୫୪.୪୨ ଭାଗ, ହିନ୍ଦି ମଧ୍ୟପ୍ରଦେଶରେ ୭୮.୦୭ ଭାଗ ଓ ମରାଠୀ ଭାଷା ମହାରାଷ୍ଟ୍ରରେ ୭୬.୩୫ ଭାଗ ଲୋକଙ୍କ ଦ୍ୱାରା ବ୍ୟବହୃତ । ଓଡିଆକୁ ପ୍ରଧାନ ଭାଷା ଭାବରେ ବ୍ୟବହାର କରୁଥିବା ଲୋକଙ୍କ ସଂଖ୍ୟା ଓଡିଶାରେ ଶତକଡା ସେଇ ବିଶେଷ ବିଶେଷ କାରଣ ପାଇଁ ସାମୟିକ, ନିର୍ଦ୍ଦିଷ୍ଟ ଓ ସୀମିତ ପରିମାଣ ଭାଷା ତାଲିମ ଦିଆଯାଇପାରେ । କିନ୍ତୁ ଭାଷାକୁ ନିର୍ଭୁଲ ଓ ସ୍ୱାଭାବିକ ଭାବରେ ପ୍ରାକୃତିକ ପରିବେଶରେ ପ୍ରୟୋଗ କରିବାର କ୍ଷମତା ହାସଲ ପାଇଁ ଶୁଣିବା, କହିବା, ପଢିବା ଓ ଲେଖିବା ପ୍ରୟୋଗାତ୍ମକ ଭାଷା ବିଜ୍ଞାନର ଏହି ଶିକ୍ଷଣ ପଦ୍ଧତି କ୍ରମରେ ଆୟତ୍ତ କରିବାକୁ ହୋଇଥାଏ । ସେଥିପାଇଁ ପ୍ରତ୍ୟେକ ପର୍ଯ୍ୟାୟରେ ବାରମ୍ବାର ଅଧିକରୁ ଅଧିକ ଅଭ୍ୟାସ କରିବାକୁ ହୁଏ । ଭାଷାର ମୌଳିକ ଧ୍ୱନୀଠାରୁ ଆରମ୍ଭ କରି ବିଭିନ୍ନ ଯୌଗିକ ତଥା ସଂଯୁକ୍ତ ଧ୍ୱନୀକୁ ବାରମ୍ବାର ଶୁଣିବା ଦ୍ୱାରା ଧ୍ୱନିଟି କ୍ରମଶଃ ସ୍ପଷ୍ଟ ଭାବରେ ହୃଦୟଙ୍ଗମ କରିହୁଏ ଓ ତା'ପରେ ଏହାକୁ ସହଜରୁ କଠିନ ଏବଂ ଜଟିଳ ଏହି କ୍ରମରେ ବାକ୍ୟଗଠନରେ ବ୍ୟବହାର କରି ବାକ୍ୟଟିର ସହଜ ସ୍ୱାଭାବିକ ବିବିଧ ପ୍ରୟୋଗ କୌଶଳକୁ ଆୟତ୍ତ କରିବାକୁ ପଡିଥାଏ । ପ୍ରତ୍ୟେକ ସ୍ତରରେ ଏହି ପଦ୍ଧତିକୁ ଅନୁସରଣ କରି କ୍ରମେ ଭାଷାର ଭାବ ଓ ସୌନ୍ଦର୍ଯ୍ୟ ପ୍ରତି ଶିକ୍ଷାର୍ଥୀ ଆକୃଷ୍ଟ ହୁଏ ଓ ସେ ସେଇ ଭାଷାରେ ଚିନ୍ତା କରିବାକୁ ବା କୌଣସି ନୂତନ ସର୍ଜନା କରିବାକୁ ମଧ୍ୟ ସକ୍ଷମ ହୋଇପାରେ । ତା'ର ଭାଷା ଦକ୍ଷତାର ପରିମାଣ ଜାଣିବାକୁ ବିଭିନ୍ନ ପରୀକ୍ଷଣ ଓ ମୂଲ୍ୟାୟନ ପଦ୍ଧତି ରହିଛି ଓ ଏହାଦ୍ୱାରା ସେ ନିଜର ଭାଷା ଜ୍ଞାନ ମାପିପାରେ ।

ଭାଷା ଏକ ଅମୂଲ୍ୟ ସମ୍ପଦ ଓ ଏଇ ଭାଷା ସମ୍ପଦକୁ ଆୟତ୍ତ କରିବାକୁ ଓ ଏହାର ସୂକ୍ଷ୍ମ ମୌଳିକ ଗଠନକୁ ଜାଣିବାକୁ ଭାଷା

ବୈଜ୍ଞାନିକ ପଦ୍ଧତିରେ ଏହାକୁ ବିଶ୍ଳେଷଣ କରିବାକୁ ପଡିଥାଏ । ଏହି ପଦ୍ଧତି ଅନୁସାରେ ବର୍ତ୍ତମାନ ଭାଷା ଶିକ୍ଷା ପାଇଁ ବିଭିନ୍ନ ଭାଷାରେ ବହୁ ଗବେଷଣା, ଆଲୋଚନା ଓ ପୁସ୍ତକ ପ୍ରଣୟନ କରାଯାଉଛି । ବର୍ତ୍ତମାନଯେଉଁ ଭାଷା ଯୁଗ ଯୁଗ ଧରି ବହୁ କଥା, ବହୁ ଭାବ, ବହୁ ସାହିତ୍ୟ ସୃଷ୍ଟି କରି ପାରିଛି ଓ କରି ଆସିଛି ତାହା ଏକ ଆଲୋଚନା ଓ ଗବେଷଣାର ବିଷୟବସ୍ତୁ ହୋଇ ପଡିଛି ।

ମହୀଶୂରସ୍ଥିତ ଭାରତୀୟ ଭାଷା ସଂସ୍ଥାନ (Central Institute of Indian Languages) ବର୍ତ୍ତମାନ ଭାରତରେ ଏକମାତ୍ର ସଂସ୍ଥା ଯେଉଁଠାରେ ଭାରତୀୟ ଭାଷାର ଗବେଷଣା କରାଯାଉଛି । ଏ ଗବେଷଣା ଭାଷାର ବିଭିନ୍ନ ବିଭାଗ, ଯେପରି ଧ୍ୱନୀ, ଶବ୍ଦସନ୍ଧି, ବ୍ୟାକରଣ, ଅର୍ଥପାର୍ଥକ୍ୟ ଓ ଆହୁରି ବହୁ ବିଭିନ୍ନ ଦିଗରୁ କରାଯାଉଛି । ଏଥିପାଇଁ ଭାଷା ବିଜ୍ଞାନ, ପ୍ରୟୋଗାତ୍ମକ ଭାଷା ବିଜ୍ଞାନ, ସାମାଜିକ ଭାଷା ବିଜ୍ଞାନ, ମନସ୍ତାତ୍ତ୍ୱିକ ଭାଷା ବିଜ୍ଞାନ ପ୍ରଭୃତିକୁ ଓ ଅଭିଧାନ ପ୍ରଣୟନ କଳା ଓ ଅନୁବାଦ କଳାକୁ ମଧ୍ୟ ଭାଷା–ବିଭାଗରେ ଅନ୍ତର୍ଭୁକ୍ତ କରାଯାଇ ଭାଷା ଗବେଷଣାକୁ ଅଧିକ ପ୍ରସାରିତ କରାଯାଇଛି । ଏ ଭାଷା ଗବେଷଣାରେ ଭାରତର ବିଭିନ୍ନ ଅଞ୍ଚଳର ଆଦିବାସୀ ଭାଷା ଓ ପ୍ରାନ୍ତୀୟ ଭାଷା ଅନ୍ତର୍ଭୁକ୍ତ ଓ ଏହା ଗବେଷଣାର ଏକ ବିଶେଷ ଅଂଶ ।

୧୯୬୯ ମସିହାରେ ପ୍ରତିଷ୍ଠିତ ଭାରତୀୟ ଭାଷା ସଂସ୍ଥାନ ଦ୍ୱାରା ବର୍ତ୍ତମାନ ସୁଦ୍ଧା ବିଭିନ୍ନ ଭାଷା–ବିଭାଗରେ ପ୍ରକାଶିତ ପୁସ୍ତକ ସଂଖ୍ୟା ପ୍ରାୟ ୨୦୦ରୁ ଅଧିକ । ମାତ୍ର ୧୫/୧୬ ବର୍ଷ ସମୟ ଭିତରେ ଭାଷାଶିକ୍ଷା ତଥା ଭାଷା–ବିଭାଗରେ ଏତେ ସଂଖ୍ୟାରେ ପୁସ୍ତକ ପ୍ରଣୟନ ଭାରତୀୟ ଭାଷା ସଂସ୍ଥାନର ଏକ ପ୍ରଶଂସନୀୟ ଉଦ୍ୟମ । ପୁସ୍ତକ ପ୍ରଣୟନ ବ୍ୟତୀତ ଦେଶ ଭିତରେ ଓ ବିଦେଶରେ ମଧ୍ୟ ଭାଷା ବିଷୟରେ ଗବେଷଣା ପାଇଁ ଏହି ୮୨.୩୧ ଭାଗ । ଏହି ପରିପ୍ରେକ୍ଷୀରେ ଭାରତରେ ଗୋଟିଏ ନିର୍ଦ୍ଦିଷ୍ଟ ପ୍ରଦେଶରେ ବାସ କରୁଥିବା ବିଭିନ୍ନ ଭାଷାଭାଷୀ ଲୋକଙ୍କ ଭିତରେ ଏବଂ ପ୍ରଦେଶ ପ୍ରଦେଶ ଭିତରେ, ଭାବର ଆଦାନ ପ୍ରଦାନ କରିଆରେ ତଥା ଭାବବିନିମୟ ଭିତିରେ ଆବେଗମୟ ସହନଶୀଳତା ଓ ସଦ୍ଭାବ ପ୍ରତିଷ୍ଠା ପାଇଁ ଭାଷା ଏକ ଶକ୍ତିଶାଳୀ ଅସ୍ତ୍ର । ଆଞ୍ଚଳିକ ସଂକୀର୍ଣ୍ଣତା ଦୂରୀକରଣ ପାଇଁ ବହୁଭାଷା ମଧ୍ୟରେ ସମନ୍ୱୟ ସ୍ଥାପନ ତଥା ସଦ୍ଭାବ ପ୍ରତିଷ୍ଠା ପାଇଁ ପୁଣି ସେଇ ଭାଷାହିଁ ମାଧ୍ୟମ ।

ଭାରତବର୍ଷ ଯେପରି ଧର୍ମନିରପେକ୍ଷ, ବହୁ ଭାଷାଭାଷୀ ରାଷ୍ଟ୍ର ସେହିପରି ମଧ୍ୟ ଭାଷା ନିରପେକ୍ଷ ହେବା ଆବଶ୍ୟକ । ଭାଷା ନିରପେକ୍ଷତା ଅର୍ଥ ପ୍ରତ୍ୟେକ ଭାଷାର ଲୋକେ ଅନ୍ୟ ଭାଷା ପ୍ରତି ସହନଶୀଳତା ତଥା ନିରପେକ୍ଷ ମନୋଭାବ ପୋଷଣ କରିବା ଉଚିତ । ଏହି ନିରପେକ୍ଷ ମନୋଭାବର ସୃଷ୍ଟି ଓ ପ୍ରସାର ପାଇଁ ଭାରତବର୍ଷରେ ଭାଷାଶିକ୍ଷାର ଆବଶ୍ୟକତା ଅନୁଭୂତ ହୁଏ । ଭାଷାଶିକ୍ଷା କଥା ଉଠିଲେ ପ୍ରଥମେ ମାତୃଭାଷା ଓ ତଦ୍‌ବ୍ୟତୀତ ଅନ୍ୟ ଭାଷାଶିକ୍ଷା କଥା ମନକୁ ଆସେ । ଭାରତବର୍ଷରେ ମାତୃଭାଷା, ଆଞ୍ଚଳିକ ଭାଷାର ଆଲୋଚନା ଜଟିଳ ମନେ ହୁଏ । କାରଣ ପ୍ରଦେଶର ପ୍ରଧାନ ଭାଷା ସରକାରୀ ଭାଷା ଭାବରେ ଗୃହୀତ ହେଲା ବେଳେ ଏହାକୁ ପ୍ରଧାନ ଆଞ୍ଚଳିକ ଭାଷା ଆଖ୍ୟା ଦିଆଯାଇପାରେ । କିନ୍ତୁ ପ୍ରଦେଶର ପ୍ରଧାନ ଭାଷା ବା ଆଞ୍ଚଳିକ ଭାଷା ସର୍ବଦା ଜଣେ ବ୍ୟକ୍ତିର ନିଜ ମାତୃଭାଷା ନ ହୋଇପାରେ । ପୁଣି ମାତୃଭାଷାର ବିଚାର ବର୍ତ୍ତମାନର ସାମାଜିକ ସ୍ଥିତିରେ ମଧ୍ୟ ଗୁରୁତ୍ୱପୂର୍ଣ୍ଣ । ଆମ ସମାଜ ବ୍ୟବସ୍ଥା ଅନୁସାରେ ପିତା ମାତା ଯଦି ଏକ ଭାଷାଭାଷୀ ହୁଅନ୍ତି ତେବେ ସେଇ ଭାଷା ସନ୍ତାନର ମାତୃଭାଷା ହୋଇଥାଏ ଏବଂ ସାଧାରଣତଃ ପରିବାରର ବଂଶ ପରମ୍ପରାରେ ସେଇ ଭାଷାହିଁ ଚଳି ଆସିଥାଏ । କିନ୍ତୁ ପିତାମାତା ଯଦି ଭିନ୍ନ ଭାଷାଭାଷୀ ହୁଅନ୍ତି ତେବେ ପିତାଙ୍କ ପରିବାରର ଭାଷା ସାଧାରଣତଃ ସନ୍ତାନର ମାତୃଭାଷାର ସ୍ଥାନ ନିଏ କିନ୍ତୁ ସେ ସନ୍ତାନ ନିଜ ମାତାଙ୍କ ମାତୃଭାଷାର ପ୍ରଭାବରୁ ମୁକ୍ତ ହୁଏ ନାହିଁ । ସେ କ୍ଷେତ୍ରରେ ତା'ର ଭାଷାକୁ ମାତୃଭାଷା କୁହାଯାଉଥିବା ମଧ୍ୟ ବିଡମ୍ବନା । ଏ କ୍ଷେତ୍ରରେ ସନ୍ତାନର ଭାଷାକୁ ପିତୃଭାଷା ଆଖ୍ୟା ଦେବା ବୋଧହୁଏ ଅଧିକ ସମୀଚୀନ ହୁଅନ୍ତା । ପୁଣି ବଂଶ ପରମ୍ପରାର ଗତିରେ ପିତାମାତାଙ୍କ ଭାଷାର ଏହି ବିଭିନ୍ନତାକୁ ଉପେକ୍ଷା କରାଯିବା ମଧ୍ୟ ଆଦୌ ଉଚିତ ନୁହେଁ । ତେବେ ମାତୃଭାଷାର ଆଲୋଚନା ଏଠାରେ ମୁଖ୍ୟ କଥା ନୁହେଁ । ତେଣୁ ଏ ବିଷୟରେ ଏତିକି କୁହାଯାଇପାରେ ଯେ ଶିଶୁ ଭାଷା ପରିବେଶରେ ମାତୃଭାଷା ଆହରଣ କରେ କିନ୍ତୁ ଅନ୍ୟ ଭାଷା ଶିକ୍ଷା ପାଇଁ ଭାଷା ପରିବେଶ ବା ଅଣଭାଷା ପରିବେଶ ଭିତରେ ପ୍ରାପ୍ତ ବୟସରେ ଅଧ୍ୟବସାୟର ସହିତ ଏହାକୁ ଆୟତ୍ତ କରିବାକୁ ତାଲିମ ନେବାକୁ ପଡେ ।

ଭାଷାଶିକ୍ଷା ପାଇଁ ବୈଜ୍ଞାନିକ ପଦ୍ଧତି ଅନୁସରଣ କରିବାକୁ ପଡିଥାଏ । ଭାଷାଶିକ୍ଷାର ବିଭିନ୍ନ ଉଦ୍ଦେଶ୍ୟ ପାଇଁ ଏକାଧିକ ପଦ୍ଧତି ଓ ଉପାୟ ରହିଛି । ଖାଲି ଭାଷା କହି ଶିଖିବା ଉଦ୍ଦେଶ୍ୟ ହେଲେ ଭାଷା ପରିବେଶ ବା ଭାଷା–ଟେପ୍ ବ୍ୟବହାର ଦ୍ୱାରା ଏହା ଆୟତ୍ତ କରିହେବ । ଭାଷାର ଅକ୍ଷର ଶିକ୍ଷା ଉଦ୍ଦେଶ୍ୟ ହେଲେ କେବଳ ଲିପି–ଶିକ୍ଷା ଦ୍ୱାରା ତାହା ହାସଲ ହୋଇ ପାରିବ । ବିଭିନ୍ନ ପରିବେଶରେ ଯେପରି ବ୍ୟାଙ୍କ୍ ଚାକିରୀ, ସେଲ୍‌ସ୍‌ମ୍ୟାନ୍ ଚାକିରୀ, ଧର୍ମପ୍ରଚାର, ବିଜ୍ଞାପନ ଓ ପ୍ରଚାର ପ୍ରଭୃତି ଉଦ୍ଦେଶ୍ୟ ହେଲେ ସଂସ୍ଥା ପକ୍ଷରୁ ବ୍ୟବସ୍ଥାମାନ ହୋଇଛି ଓ ସେହି ଲକ୍ଷ୍ୟରେ ପ୍ରତି ବର୍ଷ ବହୁ ଜାତୀୟ ଓ ଅନ୍ତର୍ଜାତିକ ସମ୍ପାଦନ ଓ କର୍ମଶାଳାମାନ ସଂସ୍ଥାନ ପକ୍ଷରୁ ଅନୁଷ୍ଠିତ ହେଉଛି ।

ଭାରତୀୟ ଭାଷା ସଂସ୍ଥାନ ଅଧୀନରେ ବର୍ତ୍ତମାନ ଛଅଟି ଶାଖା ଭାଷା କେନ୍ଦ୍ର ରହିଛି । ପୂର୍ବାଞ୍ଚଳ, ପଶ୍ଚିମାଞ୍ଚଳ, ଉତ୍ତରାଞ୍ଚଳ ଓ ଦକ୍ଷିଣାଞ୍ଚଳ କେନ୍ଦ୍ର ଛଡା ପୋଲନ ଓ ଲକ୍ଷ୍ନୌରେ ଦୁଇଟି ଉର୍ଦ୍ଦୁ ଭାଷା ଶିକ୍ଷା କେନ୍ଦ୍ର ଖୋଲା ଯାଇଛି । ପୂର୍ବାଞ୍ଚଳର ଭୁବନେଶ୍ୱରରେ ଓଡିଆ, ବଙ୍ଗଳା ଓ ଅସମୀୟା; ପଶ୍ଚିମାଞ୍ଚଳର ପୁନେର୍ ଗୁଜୁରାଟୀ, ମରାଠୀ ଓ ସିନ୍ଧି ଭାଷା; ଉତ୍ତରାଞ୍ଚଳର ପାତିଆଲାରେ ପଞ୍ଜାବୀ, କାଶ୍ମିରୀ ଓ ଉର୍ଦ୍ଦୁ ଭାଷା ଏବଂ ଦକ୍ଷିଣାଞ୍ଚଳର ମହୀଶୂରରେ ତେଲୁଗୁ, ତାମିଲ, କନ୍ନଡ ଓ ମାଲୟାଲମ ଭାଷା ଶିକ୍ଷା ଦିଆଯିବାର ବ୍ୟବସ୍ଥା ହୋଇଛି । ଏହି କେନ୍ଦ୍ରମାନଙ୍କରେ ଭାରତବର୍ଷର ବିଭିନ୍ନ ରାଜ୍ୟର ଅଣଭାଷୀ ଶିକ୍ଷକମାନଙ୍କୁ ସେମାନେ ଜାଣି ନ ଥିବା ଏକ ନିର୍ଦ୍ଦିଷ୍ଟ ଅଞ୍ଚଳର ନୂତନ ଭାଷା ଶିକ୍ଷା ଦିଆଯାଏ ଓ ଏଥିପାଇଁ ଭାଷା ବିଜ୍ଞାନର ନିୟମ ଅନୁସାରେ ଭାଷା ଶିକ୍ଷଣ ପଦ୍ଧତି ଅନୁସରଣ କରାଯାଏ ।

ଭାରତବର୍ଷର ବିଭିନ୍ନ ଭାଷା ଅଞ୍ଚଳ ଭିତରେ ଯୋଗସୂତ୍ର ସ୍ଥାପନ ପାଇଁ ଓ ଭାରତବର୍ଷର ଜାତୀୟ ଏକତା ତଥା ଜାତୀୟ ସଂହତି ସ୍ଥାପନ ପାଇଁ ଏବଂ ଭାଷା ବିନିମୟ ମାଧ୍ୟମରେ ଭାରତବାସୀଙ୍କ ପ୍ରାଣରେ ଏକ ଆବେଗମୟ ଐକ୍ୟ ଚେତନା ସୃଷ୍ଟି ନିମନ୍ତେ ଭାଷା ଶିକ୍ଷାର ଗୁରୁତ୍ୱପୂର୍ଣ୍ଣ ଭୂମିକା ରହିଛି । ଭାରତବର୍ଷର ବହୁ ବିଭିନ୍ନତା ଭିତରେ ଅଭିନ୍ନତା ଆଣିବା ପାଇଁ ଭାଷା ଏକ ସମସ୍ୟା ନ ହୋଇ ଏକ ସମାଧାନର ପଥ ହେବ ବୋଲି ଆଶା ।

ପୂର୍ବାଞ୍ଚଳ ଭାଷା କେନ୍ଦ୍ର,
ଲକ୍ଷ୍ମୀସାଗର, ଭୁବନେଶ୍ୱର ।

OGP—MP-VI (I. & P.R.) 60—6,000—16-2-1990





ଓଡ଼ିଶାର ପୁରପଲ୍ଲୀରେ ସବୁଜ ବିପ୍ଳବର ପଦଧ୍ୱନି

Vol. XLVI No. 7 UTKAL PRASANGA Regd. ...
Licence No. C.R.N.P 5—Licenced to Post without Pre-Payment



ବଲାଙ୍ଗୀରରେ ସାଧାରଣତନ୍ତ୍ର ଦିବସ, ୧୯୯୦



ବଲାଙ୍ଗୀରରେ କୃଷି ଓ ସମବାୟ ମନ୍ତ୍ରୀ ଶ୍ରୀ ବେହେରାଙ୍କ ପ୍ୟାରେଡ୍ ପରିଦର୍ଶନ

Printed at Orissa Government Press, Cuttack
PRINTED AT ORISSA GOVERNMENT

